ଭକ୍ତକବି ୬ ଦୀନକୃଷ୍ଣ ଦାସଙ୍କ ବିରଚିତ

# ବ୍ରହ୍ମାଣ୍ଡ ଭୂଗୋଳ

( ହର-ଅର୍ଜ୍ଜୁନ ସମ୍ବାଦ )

ପ୍ରକାଶକ—ଶ୍ରୀ ଦାଶରଥି ଦାସ



ପ୍ରାପ୍ତିସ୍ଥାନ—ଦାଶରଥି ପୁସ୍ତକାଳୟ, କଟକ

ସଂସ୍କରଣ ମୂଲ୍ୟ ୦ ।

# ବ୍ରହ୍ମାଣ୍ଡ-ଭୂଗୋଳ



## ପ୍ରଥମ ଅଧ୍ୟାୟ

ହେ ଦେବଦେବ ଜଗନ୍ନାଥ । ଭକ୍ତବତ୍ସଳ ଗୋପୀନାଥ ।୧। ତୁମ୍ଭେ ଯେ ସଂସାରର ସେତୁ । ସର୍ବ କର୍ମର ଅଟ ହେତୁ ॥ ତୁମ୍ଭ କୃପାରେ ମୂଢ଼ ନର । ସୁଧିଏ କରନ୍ତି ଆଦର ।୨। ତେଣୁ ଶରଣ ବଳରାମ । ଦିଅ ହେ ପ୍ରଭୁ ଦିବ୍ୟଜ୍ଞାନ ॥ ବ୍ରହ୍ମାଣ୍ଡ ଭୂଗୋଳେ ଆପଣ । ପାର୍ଥେ କହିଲ ଯେଉଁ ଜ୍ଞାନ ॥ ତାହା ମୁଁ କରିବି ଲିଖନ । ଏହି ମୋହର ମନସ୍କାମ ॥ ପୂରଣ କର ଚକ୍ରଧର । ପ୍ରଣାମ ଶତ ସହସ୍ରବାର ॥ ଶ୍ରୀ ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବେନିକର ଯୋଡ଼ି । ବନ୍ଦେ ଗୋବିନ୍ଦ ପାଦେ ପଡ଼ି ॥ ଭୋ ନାଥ ଅରତ ଭଞ୍ଜନ । କରୁଣାସିନ୍ଧୁ ଜନାର୍ଦ୍ଦନ ॥ ନମସ୍ତେ ପ୍ରଭୁ ଦିବ୍ୟରୂପୀ । ସକଳ ଦେହେ ଅଛ ବ୍ୟାପୀ ॥ ମୁକତି ଲଭିବି କେମନ୍ତେ । ଏମନ୍ତ ଆଜ୍ଞା ହେଉ ମୋତେ ॥ ଶ୍ରୀକୃଷ୍ଣ ଗୋବିନ୍ଦ ଗୋପାଳ । କହ ହେ ବ୍ରହ୍ମାଣ୍ଡ ଭୂଗୋଳ ॥ ଏ ଭାଗବତ ଧର୍ମ ଅର୍ଥ । ଦୟାକର ହେ ଗୋପୀ-ନାଥ ॥ କହ କେଶବ ତୋ'ମନେ । ନମଇ ତୁମ୍ଭର ଚରଣେ ॥ ମାୟା ନ କର ମୋତେ କହ । ଫିଟାଅ ମୋ ମନୁ ସନ୍ଦେହ ॥ ଶ୍ରୀଭଗବାନୁବାଚ—ଭକ୍ତ [illegible] କହନ୍ତି । କହନ୍ତି ମୁଁ ତୋ'ପମନେ ॥ ଶୁଣ ଭକ୍ତ [illegible] । [illegible] ଅର୍ଥେ ॥ ମନକୁ କର ତୁ [illegible] ବ୍ରହ୍ମାଣ୍ଡ ଭୂଗୋଳ ॥ ଶୁଣ ହେ ପାର୍ଥ ମନ ଦେଇ । କହିବା ଭଗବନ୍ତ ଦେଇ ॥

ଯେ କାଳେ ନ ଥିଲା ସଂସାର । ନ ଥିଲେ ଚନ୍ଦ୍ର ଦିବାକର ॥ ନ ଥିଲା ଦିବସ ରଜନୀ । ନ ଥିଲା ଭୁବନ ମେଦିନୀ ॥ ଆଦ୍ୟରୁ ନ ଥିଲା ପବନ । ନ ଥିଲେ ଶୁକ୍ରାଦ୍ୟ ତାରାଗଣ ॥ ନ ଥିଲେ ଦେବାସୁର-ନର । ନ ଥିଲା ସଂସାର ପ୍ରଚାର ॥ ନ ଥିଲା ଜଳ ସ୍ଥଳାନଳ । ନ ଥିଲା ଗଗନ ମଣ୍ଡଳ ॥ ନ ଥିଲେ ବରୁଣ କୁବେର । ନ ଥିଲା ତେଜ ଅନ୍ଧକାର ॥ ନ ଥିଲେ ବ୍ରହ୍ମା ବିଷ୍ଣୁ ଶିବ । ନ ଥିଲା ବେଦର ସ୍ୱଭାବ ॥ ସେ କାଳେ ଶୂନ୍ୟ ମୋର ରୂପ । ଏମନ୍ତେ ଗୋସାଇଁ କୋହିଲେ ॥ ବ୍ରହ୍ମାଣ୍ଡ ମୋର ଗର୍ଭେ ନେଇ । ରହିଲି ବ୍ରହ୍ମରୂପ ହୋଇ ॥ କେହି ନ ଥିଲେ ହେ ଅର୍ଜୁନ । ବ୍ରହ୍ମାଣ୍ଡ ହୋଇଥିଲା ଶୂନ୍ୟ ॥ ଏମନ୍ତେ କୋହିଲେ ଅନନ୍ତେ । ଦିଅ୍ୟା ଉପୁଜିଲା ମୋ ଚିତ୍ତେ ॥ ସୃଷ୍ଟି କାରଣେ ବାଞ୍ଛା ହେଲା । ମୋ ଅଙ୍ଗ ବିନ୍ଦୁ ଉଚ୍ଛୁଳିଲା ॥ ସେ ବିନ୍ଦୁ ବିଷ୍ଣୁଭାଗ ହେଲା । ବୀଜ ରସ ବୋଲାଇଲା ॥ ସେ ବିନ୍ଦୁ ହସ୍ତରେ ଧରିଲି । ବିଷ୍ଣୁଅଙ୍ଗୁଳେ ଗଳାଇଲି ॥ ବିଷ୍ଣୁ ବୀଜରୁ ବିଷ୍ଣୁ ଦେବ । ହୋଇଲା ବ୍ରହ୍ମା ବିଷ୍ଣୁ ଶିବ ॥ ଏ ତିନିମୂର୍ତ୍ତିଠାରୁ ପୁଣ । ଉତ୍ପତ୍ତି ହେଲା ରାମ ନାମ ॥ ନାମରୁ ଭାଗବତ ହେଲା । ତେଣୁ ଦ୍ୱିଗୁଣ ବୋଲାଇଲା ॥ କହଇ ବଳରାମ ଦାସ । ପ୍ରଥମ ଅଧ୍ୟା ହେଲା ଶେଷ । ୩୭ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ପ୍ରଥମୋଽଧ୍ୟାୟଃ ।



## ଦ୍ୱିତୀୟ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ବିନୟ ଭାବରେ । ପଚାରଇ କୃଷ୍ଣଙ୍କ ପଯ୍ୟନ୍ତରେ ॥ କଥାଏ ପଡ଼ିଲା ମୋ ମନ । କହ ହେ ପ୍ରଭୁ ଭଗବାନ ॥ ଭାଗବତ ଯେ ବୋଲାଇଲା । କେମନ୍ତେ ଏକାଦଶ ହେଲା ॥

ଏ କଥା କହ ଭାବଗ୍ରାହୀ । ଭାଗବତ ଚଯ ପୁଣ ଫେଇ ॥ ଶ୍ରୀଭଗବାନୁବାଚ—କହନ୍ତ ପ୍ରଭୁ ଦାଇତାର । ଶୁଣ ଅର୍ଜୁନ ହେତୁ କର ॥ ମାତା ପିତାଙ୍କ ରଜ ବୀଜ । ତେଣୁ ହୋଇଲା ମହାତେଜ ॥ ରଜୋବୀଜକୁ ଭାଗକଲା । ଏମନ୍ତେ ଭାଗବତ ହେଲା ॥ ଏକାଦଶ ଇନ୍ଦ୍ରିୟଗଣ । ରଜୋବୀଜରୁ ଜାତ ପୁଣ ॥ ବେଦରୁ ବ୍ରହ୍ମ ଏକ ହୋଇ । ଏକାଦଶ ସ୍କନ୍ଧ ବୋଲଇ ॥ ଦ୍ୱିତୀୟ ଅଧ୍ୟା ହେଲା ଶେଷ । କହଇ ବଳରାମ ଦାସ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହର ଅର୍ଜୁନ ସମ୍ବାଦେ ନାମ ଦ୍ୱିତୀୟୋଽଧ୍ୟାୟଃ ।



## ତୃତୀୟ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ବୋଲଇ ଗୋସାଇଁ । କଥା ଏ ମନେ ପଡ଼ିଲାଇଁ ॥ ଗୀତା ସ୍ମୃତି ଯେତେକ ତତ୍ତ୍ୱ । କାହୁଁ ଏ ଶାସ୍ତ୍ର ହେଲା ଜାତ ॥ ଏତେକ ଶାସ୍ତ୍ର ଜାତ ହେଲା । କାହୁଁ କେମନ୍ତେ ଉପୁଜିଲା ॥ ସେ ତତ୍ତ୍ୱ କହ ମୋତେ ଫେଇ । ନମସ୍ତେ ପ୍ରଭୁ ଭାବଗ୍ରାହୀ ॥ ଭୃତ୍ୟ ବଚନ ଶୁଣି କର୍ଣ୍ଣେ । କହନ୍ତ କୋମଳ ବଚନେ ॥ ଶ୍ରୀଭଗବାନୁବାଚ—ଶୁଣ ଅର୍ଜୁନ ମନଦେଇ । କହିବା ଭାଗବତ ଫେଇ ॥ ଏମନ୍ତେ ମହାପୁଣ୍ୟ ହେଲା । ସେ ଶୂନ୍ୟ ପ୍ରଣବ ହୋଇଲା ॥ ପ୍ରଣବ ଓଁକାରକୁ କହି । ଏକାକ୍ଷରଟି ସେ ଅଟଇ ॥ ଓଁକାରୁ ନାମ ହେଲା ଜାତ । ନାମରୁ ବେଦଟି ସମ୍ଭୂତ ॥ ଓଁକାରୁ ନାମ ଜାତ ହେଲା । ନାମଟି ଶାସ୍ତ୍ର ବୋଲାଇଲା ॥ ଦେହକୁ ଶାସ୍ତ୍ର ବୋଲି କହି । ନାମଟି ଶରୀରେ ବସଇ ॥ ରାତ୍ର ଦିବସ ଭଜୁଥାଇ । ତନ୍ଲେହେଁ ନାମ ନ ଛାଡ଼ଇ ॥ ଏମନ୍ତେ ଶାସ୍ତ୍ର ହେଲା ଜାତ । ଶୁଣ ଅର୍ଜୁନ ଭାଗବତ ॥ ଭଣିଲେ ବଳ ରାମ ଦାସ । ସେ ବ୍ରହ୍ମ ପାଦେ ମୋର ଆଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହର ଅର୍ଜୁନ ସମ୍ବାଦେ ନାମ ତୃତୀୟୋଽଧ୍ୟାୟଃ ।

# ଚତୁର୍ଥ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ଫିରେ ପଚାରି ଭର । ବୋଲ ହେ ବ୍ରହ୍ମାଣ୍ଡଠାକୁର ॥ ଷଡ଼ସମ୍ବାଦ କାହୁଁ ହେଲା । ଏ କଥା ସଂଶୟ ଲାଗିଲା ॥ ଷଡ଼ସମ୍ବାଦ ଅର୍ଥ କହ । ମନରୁ ଫେଡ଼ ମୋ ସନ୍ଦେହ ॥

ଶ୍ରୀଭଗବାନୁବାଚ—ଶୁଣ ଅର୍ଜ୍ଜୁନ ଦେଇ ଚିତ୍ତ । କହିବା ତୋତେ ଜ୍ଞାନ ତତ୍ତ୍ୱ ॥ ଷଡ଼ସମ୍ବାଦ ଅର୍ଥ ଶୁଣ । ହୃଦରେ ଗଣ୍ଠିକରି ଘେନ ॥ ପୂର୍ବେ ହୋ ଏକାକ୍ଷର ଥିଲା । ଅନନ୍ତ ମୁଖରୁ କ୍ଷରିଲା ॥ ଏକାକ୍ଷର ବାସୁକି ହସ୍ତେ । ବାସୁକି ଦେଲେ ବ୍ରହ୍ମାହସ୍ତେ ॥ ବ୍ରହ୍ମା ତା ଦେଲେ ନାରଦଙ୍କୁ । ନାରଦ କହିଲେ ବ୍ୟାସଙ୍କୁ ॥ ବ୍ୟାସ ତା ଶୁକ ହସ୍ତେ ଦେଲେ । ଶୁକ ତା ପରୀକ୍ଷେ କହିଲେ ॥ ପରୀକ୍ଷ ଠାରୁ ଧୃତରଷି । ସନକ ଆଗରେ ପ୍ରକାଶି ॥ ସନକ ମୈତ୍ରେୟେ କହିଲେ ॥ ମୈତ୍ରେୟେ ବିଦୁରେ ଭାଷିଲେ ॥ ଏମନ୍ତେ ଭାଗବତ ଧର୍ମ । ଷଡ଼ ପ୍ରକାରେ ଏହି ମର୍ମ ॥ ଶୁଣି ଅର୍ଜ୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଚତୁର୍ଥୋଽଧ୍ୟାୟଃ ।



# ପଞ୍ଚମ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବୋଇଲେ ଗୋସାଇଁ । ସଂଶୟ ଫେଡ଼ ଭବଗ୍ରାହୀ ॥ ପୂର୍ବେ ଯେ ଏକାକ୍ଷର ହେଲା । କେମନ୍ତେ ମୁଖରୁ କ୍ଷରିଲା ॥ ପୂର୍ବେ ବୋଲିଣି କେହୁ ପୁଣ । ଏକ ଅକ୍ଷର କେ ପ୍ରମାଣ ॥ ମୁଖରୁ କେମନ୍ତେ କ୍ଷରିଲା । ବାସୁକି ହସ୍ତରେ କେ ଦେଲା । ଅନନ୍ତ କେ ଅବା ବୋଲାଇ । ବାସୁକୀ କାହାକୁଁଠି କହି ॥ ବ୍ରହ୍ମା ସେ କେହୁ ବୋଲି ଜାଣି । ନାରଦ କେ ଅଟଇ ପୁଣି ॥ ବ୍ୟାସ ଋଷିଟି କେ ହୋଇଲେ । ଶୁକ କେ ପୁଣି ବୋଲାଇଲେ ॥ ପରୀକ୍ଷ

କାହାକୁ ଟି କହ । ସୁତଋଷିଟି କେ ବୋଲଇ ॥ ସନକ କାହାକୁଟି
କହ । ମଇନ୍ଦ୍ରେୟ ଟି କେ ବୋଲଇ ॥ ବଦୂର ପୁଣି କେ ଅଟଇ ।
ଫେଡ଼ି କହିବା ଯଦୁସାଇଁ ॥ ଶ୍ରୀ ଭଗବାନୁବାଚ—ଶୁଣ ଅର୍ଜ୍ଜୁନ
ଦେଇ ମନ । କହିବା ତୋତେ ବ୍ରହ୍ମଜ୍ଞାନ ॥ ପୂର୍ବେଟି ମହାଶୂନ୍ୟ
ଜାଣ । ଅନନ୍ତ ଜ୍ୟୋତିଟି ପ୍ରମାଣ ॥ ଓଁ କାର ଏକାକ୍ଷର କହି ।
ଜ୍ୟୋତିରୁ ଋକାର ଜନ୍ମୁଇ ॥ ବାୟୁକୀ ପବନକୁ କହି । ଋକାରୁ
ପବନ କ୍ଷରଇ ॥ ନାମଟି ବ୍ରହ୍ମ ବୋଲାଇଲା । ଓଁକାର ଉତ୍ପନ୍ନ
ଜାତ ହେଲା ॥ ନାରଦ ତ୍ରିଗୁଣକୁ କହି । ଋକାର, ସେହି ଜନ୍ମ
ହୋଇ ॥ ବ୍ୟାସଟି ଚୈତନ୍ୟ ପ୍ରତ୍ୟକ୍ଷ । ଓଁ କାର ଉତ୍ପନ୍ନ ଯେ
ପ୍ରକାଶ ॥ ଶୁକ ଯେ ସୁଷୁମ୍ନା ଦ୍ୱାର । ଋକାର ଠାରୁ ସେବାହାର ॥
ନାମଟି ପରୀକ୍ଷ ହୋଇଲା । ଓଁକାରୁ ଶବଦ ହୋଇଲା ॥ ସୁନ୍ଦ ଯେ
ସୁତଋଷି ଜାଣ । ସନକ ଶକ୍ତିଟି ପ୍ରମାଣ ॥ ବନ୍ଦୁଟି ମଇନ୍ଦ୍ରେୟ
ହୋଇ । ବଦୁର ଜ୍ଞାନଟି ବୋଲାଇ ॥ ଶୂନ୍ୟରୁ ବନ୍ଦୁ ଯେ ଖସିଲା
ଷଡ଼ ପ୍ରକାରେ ସେ ହୋଇଲା ॥ ଷଡ଼ ସମ୍ବାଦ ହୁଏ ଆସି । ମାର୍ତ୍ତ
ରଜରେ ଯାଇ ମିଶି ॥ ସ୍ରବରୁ ଯାହା ସେ ଅଦ୍ଭୁତ । ଏଣୁଟି ନାମ
ଭାଗବତ ॥ ଷଡ଼ ପ୍ରକାରେ ସେ ଖସିଲା । ଷଡ଼ ସମ୍ବାଦ ବୋଲା-
ଇଲା ॥ ଶୁଣି ଅର୍ଜ୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ ॥

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ
ଷଡ଼ସମ୍ବାଦ କଥନେ ନାମ ପଞ୍ଚମୋଽଧ୍ୟାୟଃ ।



## ଷଷ୍ଠ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବୋଲେ ଭଗବାନ । କଥାଏ ପଡ଼ିଲା
ମୋ ମନ ॥ ଦ୍ୱାଦଶସ୍କନ୍ଧ କାହିଁ ହୋଇ । ଏକଥା କହ ଭାବଗ୍ରାହୀ ।
ଦ୍ୱାଦଶସ୍କନ୍ଧ ପଦ ଅଥ । ଫେଡ଼ି କହିବା ଜଗନ୍ନାଥ ॥ ଶ୍ରୀଭଗବାନ

ଉବାଚ—ଶୁଣ ଅର୍ଜ୍ଜୁନ ମନ ଦେଇ । କହିବା ଭୂଗୋଳକୁ ଫେଇ । ପ୍ରଥମସ୍କନ୍ଧ ତାକୁ କହି । ଦ୍ୱିତୀୟସ୍କନ୍ଧ ଲଲାଟହିଁ ॥ ତୃତୀୟସ୍କନ୍ଧ କର୍ଣ୍ଣ କର । ଚତୁର୍ଥସ୍କନ୍ଧ ଚକ୍ଷୁ ହେଲ ॥ ପଞ୍ଚମସ୍କନ୍ଧ ନାସା ଜାଣ । ଷଷ୍ଠ-ସ୍କନ୍ଧ ଯେ ମୁଖ ପୁଣ । ସପ୍ତମସ୍କନ୍ଧ କଣ୍ଠ କହି । ଅଷ୍ଟମସ୍କନ୍ଧ ହୃଦ ହୋଇ ॥ ନବମସ୍କନ୍ଧ ନାଭିପୁଣ । ଦଶମସ୍କନ୍ଧ ପଞ୍ଚପ୍ରାଣ ॥ ଏକାଦଶ ଇନ୍ଦ୍ରିୟ କଲ । ଦ୍ୱାଦଶ ବାୟୁ ସୂକ୍ଷ୍ମ ହେଲ ॥ ଦ୍ୱାଦଶସ୍କନ୍ଧ ଯେ ଏମନ୍ତେ । ଅର୍ଜ୍ଜୁନ କହିଲି ମୁଁ ତୋତେ ॥ ଅର୍ଜ୍ଜୁନ ଶୁଣି ହେଲେ ତୋଷ । ଭଣିଲେ ବଳରାମ ଦାସ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଷଷ୍ଠୋଽଧ୍ୟାୟଃ ।

—※—

## ସପ୍ତମ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ ।—ପୁଣ ଅର୍ଜ୍ଜୁନ ପଚାରଇ । ହେ ନାଥ କହ ମୋତେ ଫେଇ ॥ ନିଗମ କଳ୍ପତରୁ ଅର୍ଥ । ଫେଡ଼ି କହ ହେ ଜଗ-ନ୍ନାଥ ॥ ନିଗମ ବୋଲି ଯେ କେମନ୍ତ । କିପାଁ ତାହାର ନାହିଁ ଅନ୍ତ ॥ ଶ୍ରୀ ଭଗବାନୁବାଚ— ଶୁଣ ଅର୍ଜ୍ଜୁନ ମନ ଦେଇ । କହିବି ଭୂଗୋଳକୁ ଫେଇ ॥ ନିଗମ ବୋଲି ଯାହା କହି । ମହାଶୂନ୍ୟଟି ସେ ଅଟଇ ॥ ବେଦ ଯହିଁକି ନ ଗମିଲା । ତେଣୁ ନିଗମ ନାମ ହେଲା ॥ କଳ୍ପତରୁଟି ଯାହା କହି । ନିରାକାରଟି ରୂପ ହୋଇ ॥ ସେଠାରୁ ରସବନ୍ଦୁ ଗଳି । ସେବୀଜ ରସୁଫଳ ଫଳି ॥ ଶୁକବୋଲିଣ ଯାହା କହି । ଶିଶୁ ଧାରନ୍ତି ସେ ଅଟଇ ॥ ବନ୍ଦୁଟି ସେହି ବାଟେ ଝରି । ଏଣୁ ଏ ଶୁକମୁଖଁ ଝରି ॥ ବୀଜ ସଂଯୁକ୍ତ ହୋଇଗଲି । ମାତା ଉଦରେ ଯାଇଁ ମିଶି ॥ ଏ ରଜ ବୀଜକୁ ପିଅଇ । ଏଣୁଟି ଭାଗବତ ହୋଇ ॥ ଭବରେ ଭବ ଯହୁଁ କଲା । ତେଣୁଟି ଏ ଦେହ ପାଇଲା ॥ ସୁଜନମାନେ ହେତୁକର । ଭବକୁ ଛାଡ଼ି ଭାବଧର ॥

ଭାବନ୍ତି ନାମ ରସ ଜାଣ । ପିଅ ହେ ସାଧୁ ସୁଜ୍ଞଜନ ॥ ଭବ-
ସାଗରେ ବୁଡ଼ୁଛ ପଡ଼ । ନାମର ଭେଳକୁ ଦୃଢ଼ ॥ କହଇ ବଳ-
ରାମ ଦାସ । ବ୍ରହ୍ମାଣ୍ଡଭୂଗୋଳ ପ୍ରକାଶ ॥ ଇତି ଶ୍ରୀବ୍ରହ୍ମାଣ୍ଡଭୂଗୋଳ
ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ସପ୍ତମୋଽଧ୍ୟାୟଃ ।

---

## ଅଷ୍ଟମ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ ।—ଅର୍ଜ୍ଜୁନ ପୁଣି ପଚାରିଲ । ସଂଶୟଚିତ୍ତେ ଭୟ
କଲ ॥ ଶ୍ରୀଭାଗବତ ପଦ ଅର୍ଥ । ମୋତେ କହ ତା ତୋଷ ଚିତ୍ତ ॥
ନମଇଁ ନୃସିଂହ ଚରଣ । ଅନାଦି ପରମ କାରଣ ॥ ପରମ କାରଣ
କିପାଇଁ । ଅନାଦି ପ୍ରଭୁ ଭାବଗ୍ରାହୀ ॥ ଏ ପଦ ଅର୍ଥ କହ ମୋତେ ।
ନମଇଁ ତୋର ପାଦାଗ୍ରତେ । ଶ୍ରୀଭଗବାନୁବାଚ—ଅର୍ଜ୍ଜୁନ ବଚନେ
ମୁରାରି । କହନ୍ତି ଭୂଗୋଳ ବିସ୍ତାରି ॥ ଶୁଣ ଅର୍ଜ୍ଜୁନ ସାଧୁଚେତା ।
ତୋତେ କହିବା ତତ୍ତ୍ୱ ଗାଥା ॥ ଅବ୍ୟକ୍ତରୂପ ଭଗବାନ । ମୋ
ତହୁଁ ସୃଷ୍ଟି ନୋହେ ଭିନ୍ନ ॥ ଅନାଦି ରାଧା କେ ବୋଲଇ ।
ରାଧାଙ୍କ କାରଣ ଅଟଇ ॥ ରାଧା ଅକ୍ଷରେ ସେ ଯୁଗଳ । ରାଧାରେ
ମଅଛି ବିହାର ॥ ଏ ପଦ ଅର୍ଥର ସନ୍ଦେଶ । ଭଣିଲେ ବଳରାମ
ଦାସ ॥୧୧॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ
ସମ୍ବାଦେ ନାମ ଅଷ୍ଟମୋଽଧ୍ୟାୟଃ ।

---

## ନବମ ଅଧ୍ୟାୟ

ଅର୍ଜୁନ ଉବାଚ ।—ପୁଣି ଅର୍ଜୁନ କରଯୋଡ଼ି । ବୋଲଇ
କୃଷ୍ଣ ପାଦେ ପଡ଼ି ॥ ନମଇଁ ନୃସିଂହ ଚରଣ । ଏ ଅର୍ଥ କହ
ଭଗବାନ ॥ ଏକ ଅକ୍ଷରେ ଏକ ଅର୍ଥ । ମୋତେ କହିବ ପଦ୍ମନେତ୍ର ।
ଅର୍ଜୁନ ବଚନେ ଗୋବିନ୍ଦ । କହନ୍ତି ଏକାଦଶସ୍କନ୍ଧ । ଶ୍ରୀ ଭଗବାନୁ
ବାଚ ।—ଅକ୍ଷର ଗୋଟିକେ ଯେ ଅର୍ଥ । ତୋତେ କହିବା ଯେ

ଛଦନ୍ତି । ନଅଟି ନିରାକାର ରୂପ । ମଅ ଯେ ମହା ସୃଷ୍ଟି ରୂପ । ଈକାର ଈଶ୍ୱର ପ୍ରମାଣ । ନଅ ଯେ ଅର୍ଦ୍ଧମାତ୍ରା ଜାଣ । ସେଇରୁ ସୁଷୁମ୍ନା ଜାତ । ହୁଅରୁ ଷଟ୍‌ଚକ୍ର ଜଗତ । ୮ । ଚଅରୁ ଚରାଚର ହେଲା । ଗଅ ହି ଶରୀରେ ରହିଲା । ଣଅ ଅକ୍ଷର ମହାଶୂନ୍ୟ । ଅନନ୍ତ ହୋଇବ ତହିଁ ଲୀନ ॥ ଭଣିଲେ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହର-ଅର୍ଜୁନ ସମ୍ବାଦେ ନାମ ନବମୋଽଧ୍ୟାୟଃ ।

---

## ଦଶମ ଅଧ୍ୟାୟ

ଅର୍ଜୁନ ଉବାଚ ।—ଅର୍ଜୁନ ବିନୟ ଭାବରେ । ପଡ଼ଇ କୃଷ୍ଣର ପୟରେ ॥ ହେ କୃଷ୍ଣ ଜୀବନ ମୋହର । ତୋ ନାମ ସଂସାରରେ ସାର ॥ ଅନାଦି ପ୍ରଭୁ ଭାବଗ୍ରାହୀ । ପରମ କାରଣ କିମ୍ପାଇଁ । ୩ । ଶ୍ରୀ ଭଗବାନୁବାଚ—ଜଗନ୍ନାଥ କମଳ ଲୋଚନ । ଶୁଣ ହେ ଭକତ ଅର୍ଜୁନ । ଅନାଦି ଅର୍ଦ୍ଧମାତ୍ରା କହି । ପ୍ରକୃତି ଭାବ ସେ ଅଟଇ । ପ୍ରଳୟେ ପରମେ ମିଶନ୍ତି । ଜୀବକୁ କାରଣ କରନ୍ତି ॥ ଏବେହେଁ ପିତାଭାବେ ଥିଲା । ପରମ କାରଣ ସେ କଲା ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ୮ । ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରଅର୍ଜୁନ ସମ୍ବାଦେ ନାମ ଦଶମୋଽଧ୍ୟାୟଃ ।

---

## ଏକାଦଶ ଅଧ୍ୟାୟ

ଅର୍ଜୁନ ଉବାଚ ।—ଅର୍ଜୁନ ବୋଲଇ ଗୋସାଇଁ । କଥାଏ ପଚାରିବି ମୁହିଁ । ୧ । ଲୀଳାବିଗ୍ରହ କଳେବର । ଦେବ ମାନବେ ଅଗୋଚର । ଏ ଜ୍ଞାନ କହ ଭାବଗ୍ରାହୀ । ଶୁଣିଲେ ତୃପତେ ଯିବି ମୁହିଁ । ଶ୍ରୀ ଭଗବାନୁବାଚ—କହନ୍ତି କମଳାର ବର । ମୁଁ ଥାଇ ସକଳ ଶରୀର । ଘଟରେ ଲୀଳା କରୁଥାଇ । ଘଟ ଛାଡ଼ିଲେ ଶୂନ୍ୟେ

ଯାଇ ॥ ଘଟରୁ ପ୍ରାଣ ଛାଡ଼ିଯାଇ । ତାହାକୁ କେହୁ ନ ଦେଖଇ ॥ ଜୀବ ଯେ ଶୂନ୍ୟେ ଚଳିଗଲା । ଦେବ ମନୁଷ୍ୟ ନ ଜାଣିଲା ॥ ମେଘେ ବିଜୁଳୀ ଯେହ୍ନେ ମାରେ । ମାରଣ ଯେଉଁଦଗେ ଚଳେ ॥ ବିଜୁଳି ପ୍ରାୟେ ଦେହୁ ଯାଇ । ଦେବ ମାନବେ ନ ଦେଖଇ ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଏକାଦଶୋଽଧ୍ୟାୟଃ ।

— ❋ —

## ଦ୍ୱାଦଶ ଅଧ୍ୟାୟ

ଅର୍ଜୁନ ଉବାଚ—କରୁଣା କଟାକ୍ଷ ପ୍ରକାଶେ । ଭକତଜନ ଦୁଃଖନାଶେ ॥ କେମନ୍ତେ କରୁଣା ସେ କଲେ । ଭକତ ଦୁଃଖକୁ ନାଶିଲେ ॥ ଏ ଅର୍ଥ କହ ଦୟାନିଧି । ମୋ ଶିର ଚୁମ୍ବ ପାଦେ ବନ୍ଦି । ୩ । ଶ୍ରୀ ଭଗବାନୁବାଚ—ଶୁଣ ଅର୍ଜୁନ ହେତୁ ମନେ । କହିବା ଭୂଗୋଳ ବିଧାନେ । ୪ । ଜୀବଟି ଭକତ ଅଟଇ । ପ୍ରଳୟ କଲେ ଦୁଃଖ ପାଇ ॥ ବେଗେ ଛାଡ଼ିଲେ ପିଣ୍ଡ ଜୀବ । ଏମନ୍ତେ ପାଇ ଦୁଃଖୀ ହେବ ॥ ଯହୁଁ ଅନେକ ଦୁଃଖ ପାଇ । ପ୍ରଭୁଙ୍କ କରୁଣା ହୁଅଇ ॥ ଜୀବ ପରମ ବେନି ମିଶେ । ଭକତଜନ ଦୁଃଖନାଶେ ॥ କହଇ ବଳରାମ ଦାସ । ସେ ବ୍ରହ୍ମପାଦେ ମୋର ଅଶ । ୯ । ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଦ୍ୱାଦଶୋଽଧ୍ୟାୟଃ ।

———

## ତ୍ରୟୋଦଶ ଅଧ୍ୟାୟ

ଅର୍ଜୁନ ଉବାଚ—ସେ ହରି ଚରଣେ ପ୍ରକାଶ । ଶ୍ରୀଭାଗବତ ଏକାଦଶ ॥ ଏ ଅର୍ଥ କହ ମୋତେ ଫେଡ଼ି । ନମଇଁ ବ୍ରହ୍ମାଣ୍ଡ ଗୋସାଇଁ ॥ ହରି ଚରଣୁ ପ୍ରକାଶିଲା । ଶ୍ରୀ ଭାଗବତ ବୋଲାଇଲା ॥

ଏକଥା କହ ଦଇତାରି । ଶୁଣିଲେ ମୁଁ ଯିବ ନିସ୍ତରି ॥ ଶ୍ରୀ ଭଗବାନୁବାଚ—ଶୁଣ ଅର୍ଜୁନ ମହାରଥୀ । ତୋତେ କହିବା ତତ୍ତ୍ୱକଥା ॥ ଯେ ହରି ଶୂନ୍ୟବ୍ରହ୍ମ ଜ୍ୟୋତି । ତା ପାଦୁ ବିନ୍ଦୁ ଉତପତ୍ତି । ୭ । ସେ ବିନ୍ଦୁ ପଦ୍ମରେ ରହିଲା । ରଜୋ ବୀଜରେ ଏକ ହେଲା ॥ ରଜୋ ବୀଜକୁ ଭୃଗକଲା । ତେଣୁଟି ଭାଗବତ ହେଲା ॥ ରଜୋ ବୀଜରୁ ଏକ ପାଦ । ଜନ୍ମିଲେ ଏକାଦଶସ୍କନ୍ଧ । ଶ୍ରୀଭାଗବତ ଏକାଦଶ । ତେଣୁ ଏ ହୋଇଲା ପ୍ରକାଶ ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ୧୦ । ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ତ୍ରୟୋଦଶୋଽଧ୍ୟାୟଃ ।

---

## ଚତୁର୍ଦ୍ଦଶ ଅଧ୍ୟାୟ

ଅର୍ଜୁନ ଉବାଚ – ଅର୍ଜୁନ ପୁଣି ପଚାରଇ । କଥାଏ ମନେ ପଡ଼ିଲଇ ॥ ସାଧୁ ସଙ୍ଗମେ ଗଙ୍ଗାତୀରେ । ଶୁକ ଚରଣ ଧରି କରେ ॥ ଆନନ୍ଦେ ଅଶ୍ରୁପାତ କଲା । ମୁନିଙ୍କ ଚରଣେ ନମିଲା ॥ ସାଧୁ ଯେ କେଉଁଠାରେ ଥିଲେ । ଗଙ୍ଗାତୀରରେ ସଙ୍ଗ କଲେ । ୪ । ଶୁକ ଚରଣକୁ ଧରିଲେ । ନୟନୁ ଅଶ୍ରୁପାତ କଲେ ॥ ଏ ଅର୍ଥ କହ ଭଗବାନ । ନମଇ ତୁମ୍ଭର ଚରଣ ॥ ଶ୍ରୀ ଭଗବାନୁବାଚ-ଅର୍ଜୁନ ବାକ୍ୟ ଚକ୍ରପାଣି । ବୋଲନ୍ତି ଶୁଣ ଫାଲଗୁନି । ୭ । ଡାହାଣ ନାସାର ଯେ ବାଇ । ଗଙ୍ଗା ବୋଲନ୍ତି ତାକୁ କହି ।୮। ସୁଷୁମ୍ନା ତେ ସେହୁ ଜାଣ । ମନ ପବନ ଯେ ଚରଣ । ୯ । ମନ ପବନ ଏକ ହୋଇ । ଏକୀବ ଶିରପରେ ରହି । ୧୦ । ଶୁକଚରଣକୁ ଧରିଲା । ପଶ୍ଚିମ ଦୃଷ୍ଟି ପୂର୍ବେ ଦେଲା ।୧୧। ଶୂନ୍ୟରେ ଦୃଷ୍ଟି ଯେ ରହିଲା । ନୟନୁ ଅଶ୍ରୁ ପାତ କଲା ॥ ଶିଶୁଧାରି ଯେ ସୁତ ହୋଇ ।

ବ୍ରହ୍ମାଣ୍ଡ ଭୂଗୋଳରେ କହୁ । ସେ ଧାରେ ପ୍ରତ୍ୟେକର ଅଣ ॥ ଭଣିଲେ ବଳରାମ ଦାସ । ୧୪ । ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରଅର୍ଜ୍ଜୁନ ସମ୍ବାଦେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

— ❋ —

## ପଞ୍ଚଦଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବୋଲଇ ଗୋସାଇଁ । କଥାଏ ପଚୃ-ଶବ ମୁହିଁ ।୧। ଦେବଙ୍କ ବ୍ୟାକୁଳେ ମୁରାରି । ମର୍ତ୍ତେ ମନୁଷ୍ୟ ଦେହ ଧରି ।୨। ଦୁର୍ଜନଗଣ ନାଶ କଲେ । ଅବନୀ ଭାର ଉଣ୍ଡାସିଲେ ॥ ଏ ଅର୍ଥ କହ ଭଗବାନ । ନମଇଁ ତୁମ୍ଭର ଚରଣ ।୪। ଭଗବାନ ଉବାଚ-ଶୁଣ ଅର୍ଜ୍ଜୁନ ବୀରମଣି । କହିବା ଭାଗବତ ବାଣୀ ।୫। ଅବନୀ ଦେହକୁ ଯେ କହି । ପ୍ରକୃତି ଯହିଁ ବଶ ହୋଇ । ଦୁଷ୍ଟ ଗଣକୁ ନାଶ କରି । ଏ ଆତ୍ମା ଯାଉ ନିଜପୁରୀ ।୭। ଜୀବ ପରମ ଶୂନ୍ୟେ ଚଳେ । ଅବନୀ ଭାର ଉଣ୍ଡାସିଲେ ।୮। କହଇ ବଳରାମ ଦାସ । ବ୍ରହ୍ମାଣ୍ଡ-ଭୂଗୋଳ ପ୍ରକାଶ ।୯। ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ପଞ୍ଚଦଶୋଽଧ୍ୟାୟଃ ।

— ❋ —

## ଷୋଡ଼ଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ-ଅର୍ଜ୍ଜୁନ ଶିରେ କର ଯୋଡ଼ି । କହଇ କୃଷ୍ଣ ପାଦେ ପଡ଼ି ।୧। ଭୀମକୁ ବିଷଲଡ଼ୁ ଦେଇ । ଜତୁର ଘରେ ଅଗ୍ନି ଦାହି ।୨। ଏ ଅବ ଯେତେ କର୍ମମାନ । ପାଣ୍ଡବେ କଲ ଦୁର୍ଯୋ-ଧନ ॥ ସଙ୍ଗତେ ପାଞ୍ଚଭାଇ ଘେନି । ନାଶିଲେ ସେ କୁରୁ ସଇନି ॥ ଭୀମ କେ ଦେହେ ବୋଲାଇଲ । କେ ତାକୁ ବିଷଲଡ଼ୁ ଦେଲ ॥ ଏ ଅର୍ଥ କହ ଭଗବାନ । ନମଇଁ ତୁମ୍ଭର ଚରଣ ॥ ଶ୍ରୀଭଗବାନୁ-ବାଚ-ଅର୍ଜ୍ଜୁନ ବଚନେ ମୁରାରି । କହନ୍ତି ଭୂଗୋଳ ବିସ୍ତାରି ।। ପବନ ଭୀମ ବୋଲାଇଲା । ଦେହକୁ ଜଡ଼ଧର କଲା ॥ ବିଷ ଲଡ଼ୁ ତ

ସ୍ଥିରି ଜାଣ । ଏକଥା ଅଟଇ ପ୍ରମାଣ ।୯। ମନଟି ଦୁର୍ଯୋଧନ ହେଲ । କାମ ଅଗ୍ନିରେ ଜାଳିଦେଲ । ପଞ୍ଚପାଣ୍ଡବ ପଞ୍ଚଭୂତ । ସଙ୍ଗତେ ଘେନି ଜଗନ୍ନାଥ ।୧୧। କୁରୁବଳକୁ ନାଶ କରି । ପାଣ୍ଡବ ବଂଶ ଯାନ୍ତି ତରି ॥ ଦୁର୍ଯୋଧନର ଯେତେ ସୈନ୍ୟ । ପାଣ୍ଡବବଳ ଶତେଗୁଣ ॥ ପ୍ରଳୟ ପାପକୁ ନାଶନ୍ତି । ସତ୍ତ୍ୱଗୁଣରେ ତରିଯାନ୍ତି ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ୨୫ । ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଷୋଡ଼ଶୋଽଧ୍ୟାୟଃ ।

—※—

## ସପ୍ତଦଶ ଅଧ୍ୟାୟ

ଅର୍ଜୁନ ଉବାଚ-ଅର୍ଜୁନ ବୋଲେ ଯୋଡ଼ି କର । ଶୁଣ ହେ ବ୍ରହ୍ମାଣ୍ଡଠାକୁର ॥ ଯେସନେବନେକାଣେକୋଣେ । ଅନଳ ଜ୍ୱଳେ ଘରଷେ ॥ ବନରେ କାଶ କେ ହୋଇଲ । ଘଷନ୍ତେ ଅଗ୍ନି ଜାତ ହେଲ । ୩ । ସେ ବନୁ ଅଗ୍ନି ଜାତ ହୋଇ । ପୁଣି ସେ ବନକୁ ଦହଇ ।୪। ସଂଶୟ ଫେଡ଼ି ମୋତେ କହ । ଶୁଣି ମୋ ସ୍ଥିରହେଉ ଦେହ ।୫। ଶ୍ରୀକୃଷ୍ଣ ଉବାଚ-କହନ୍ତି କମଳଲୋଚନ । ଶୁଣ ହେ ପାଣ୍ଡବ ଅର୍ଜୁନ ।୬। ଦେହକୁ ବନ ବୋଲି କହୁ । ପବନ କାଶ ସେ ବୋଲଇ ।୭। ପରମ ମୂର୍ଖ ଅଗ୍ନି ଜାତ । ଜୀବକୁ ପୋଡ଼ଇ ଭୂତ ॥ ଏ ବନୁ ଅଗ୍ନି ଜାତ ହେଲ । ଦହନ କରଣ ଲଭିଲ ॥ ଶୁଣି ଅର୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ସପ୍ତଦଶୋଽଧ୍ୟାୟଃ ।

# ଅଷ୍ଟାଦଶ ଅଧ୍ୟାୟ

ଅର୍ଜୁନ ଉବାଚ–ଅର୍ଜୁନ ବୋଲେ ମହାବାହୁ । କଥାଏ ମୋତେ ଆଜ୍ଞା ହେଉ ।୨। ବିପ୍ରେ ଯେ ଶ୍ରମରେ ଗମନ୍ତେ । ମିଳିଲେ ପୁଣ୍ଡ୍ରୀକ ତୀର୍ଥେ ॥ ସମସ୍ତେ ତୀର୍ଥେ ଯାଇ ମିଳି । ରଙ୍ଗେ ସେବିଲେ ନାନା ... ॥ ସେ ବିପ୍ରଗଣେ କାହିଁ ଥିଲେ । କୃଷ୍ଣଦର୍ଶନେ ସେ ଗମିଲେ ॥ ସେ ପୁଣ୍ଡ୍ରୀକ ତୀର୍ଥକେହୁ । କି ରୂପେ କେଳି କଲେ ଯେହୁ ॥ ଏଭେଦ କରି ମୋତେ କହ । ଶୁଣିଲେ ଛାଡ଼ିବ ସନ୍ଦେହ ॥ ଶ୍ରୀ ଭଗବାନୁବାଚ–ଶୁଣ ପାଣ୍ଡବ ଚୂଡ଼ାମଣି । କହିବା ଭୂଗୋଳକୁ ପୁଣି ॥ ପରମବ୍ରହ୍ମ ବୀଜ ଯେସି । ପଞ୍ଚଭୂତହିଁ ତହିଁ ମିଶି ॥ ବିପ୍ରଗଣ ଯେ ବୋଲାଇଲେ । ସମସ୍ତେ ସେ ତୀର୍ଥେ ମିଳିଲେ ॥ ପୁଣ୍ଡ୍ରୀକ ଯେ ତୀର୍ଥ ଦେଖି । ମାତାର ପଦ୍ମ ସେ ଅଟଇ । ଅର୍ଜୁନ ଯୋଡ଼ି କରତଳ । ନୟନୁ ବହେ ଅଶ୍ରୁଜଳ ।୧୧। ଶାମ୍ବକୁ ନାରୀ ବେଶ କରି । ଉଦରେ ଲୌହପାତ୍ର ଭରି ॥ ଶାମ୍ବ ବୋଲଣ କେ ଅଟଇ । ସେ ଲୌହ ପାତ୍ର କେ ହୁଅଇ । କେମନ୍ତେ ଲୌହପାତ୍ର ହେଲା । ଯାଦବ କୁଳ ନାଶ କଲା ॥ ଏ ଅର୍ଥ କହ ଭାବଗ୍ରାହୀ । ଶୁଣିବା ନିଶ୍ଚିତ ମୁହିଁ ॥ ଶ୍ରୀ ଭଗବାନୁବାଚ-ଅର୍ଜୁନ ବଚନେ ମୁରାରି । କହନ୍ତି ଭୂଗୋଳ ବିସ୍ତାରି ।୧୭। ଶାମ୍ବ ଯେ ମନ ତାରି ଜାଣ । ଜୀବ ସେ ଲୌହ ପରମାଣ ।୧୮। କାୟକୁ ପାତ୍ର ବୋଲି କହି । ବିଜ୍ଞେ ଭେଦଟି ସେ ଅଟଇ ।୧୯। ଜଳଟି ଲୌହପାତ୍ର ହେଲା । ଜୀବ ଅଂଶକୁ ନାଶ କଲା । ୨୦ । କହଇ ବଳରାମ ଦାସ । ବ୍ରହ୍ମାଣ୍ଡ-ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ... ଅର୍ଜୁନ ସମ୍ବାଦେ ନାମ ଅଷ୍ଟାଦଶୋଽଧ୍ୟାୟଃ ।

## ଊନବିଂଶ ଅଧ୍ୟାୟ

ଅର୍ଜ୍ଜୁନଉବାଚ—ଅର୍ଜ୍ଜୁନ ବୋଲଇ ଗୋସାଇଁ । କଥାଏ ମନେ ପଡ଼ିଲଇଁ ।୧। ସେ ଶାମ୍ବ ମୁନିଙ୍କି ଦେଖିଲା । ମୁନି ତାହାଙ୍କୁ ଶାପ ଦେଲା । ପୁଣି ସେ ପୁତ୍ର ଚଳିଗଲେ । ଉଗ୍ରସେନଙ୍କୁ ଯେ କହିଲେ ମୁନିଙ୍କ ଶାପୁଁ ଲୌହ ଜାତ । ଜାଣିବ ବାହୁଁ ଏ ତଦନ୍ତ । ମୁନି ଯେ ଲୌହ ବୋଲିଇଲା । ଉଗ୍ରସେନ ସେ ଲୌହ ହେଲା । ଶ୍ରୀଭଗବାନୁବାଚ—ଶୁଣି ଅର୍ଜ୍ଜୁନର ବଚନ । କହନ୍ତି ଦେବକୀ ନନ୍ଦନ । ଜ୍ୟୋତି ପୁରୁଷ ଯାହା କହି । ଋଷି ସେ ଜଗତେ ବୋଲଇ ।୭। ଜୀବକୁ ସେହି ଜାତ କଲା । ଧର୍ମରେ ପାଳିବ ବୋଇଲା । ପୃଥ୍ୱୀରେ ପଣ୍ଡ ପାଶୋରିଲା । ଅଧର୍ମ କର୍ମ ସେହି କଲା ।୯। ସ୍ତ୍ରିସ୍ତ୍ରୀ ସଙ୍ଗମେ କ୍ଷତ୍ରେ ପଡ଼ି । ସୁଧର୍ମମାନ ଦେଲା ଛାଡ଼ି ।। ପରମ ପିତା ବୋଲିଇଲା । ଜୀବ ଅଧର୍ମରେ ବଢ଼ିଲା ।। ଯହୁଁ ନ କଲା ପିତାବାକ୍ୟ । ତହୁଁ ପାଇଲା ବ୍ରହ୍ମଶାପ ।୧୨। ବ୍ରହ୍ମକୁ ଯହୁଁ ନାଶ କଲା । ଏଣୁ ଅନଳେ ନାଶ ହେଲା ।୧୩। ଶାମ୍ବ ଜନମ ଅର୍ଥ ଏହି । ଅର୍ଜ୍ଜୁନେ କହେ ଭାବଗ୍ରାହୀ ।୧୪। ପ୍ରକୃତି ଗୁଣ କୃଷ୍ଣସୁତ । ମୁକ୍ତଲିଙ୍ଗ ବ୍ରାହ୍ମ ଜାତ ତତ୍ତ୍ୱ । ଚୈତନ୍ୟ ଉଗ୍ରସେନ କହି । ଶୁଣ ତୁ ଯୁଧିଷ୍ଠିର ଭାଇ । ଶୁଣି ଅର୍ଜ୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ ।୧୬। ଇତି ଶ୍ରୀବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଊନବିଂଶୋଽଧ୍ୟାୟଃ ।

—✽—

## ବିଂଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ କହେ ଭଗବାନ । ମୁଁ ତୁମ୍ଭ ଚରଣେ ଶରଣ । ଅନେକ ଦିନ ଘଷି ଶେଷେ ଅଳପ ରହେ ଅବଶେଷେ । ନ ପାରି ଧରାଇଲେ ଜଳେ । ମୀନ ଗିଳିଲା ତାହାବଳେ

ଲୌହ ବୋଲିଣ ତାହୁଁ ହେଲା । ଜଳ ବୋଲି ଯେ ବୋଲାଇଲା
ସେ ଜଳେ ମୀନ ରହିଥିଲା । ଆହାର ବୋଲି ଗିଳିଦେଲା ॥ ଏ
ଅର୍ଥ କହ ଗୋପୀନାଥ । ଶୁଣି ମୋ ସ୍ଥିର ହେଉ ଚିତ୍ତ । ୯ ।
ଶ୍ରୀ ଭଗବାନୁବାଚ—କହନ୍ତି ଭୂଗୋଳ ବିଧାନ । ଶୁଣ ଅର୍ଜୁନ
ଦେଇ ମନ ॥ ଜୀବଟି ଲୌହ ବୋଲି କହି । ପବନ ଜଳ ସେ
ବୋଲାଇ ॥ ପବନ ବଳେ ସେ ଚଳଇ । ସେବିନ୍ଦୁ ଜଳରେ ପଡ଼ଇ
ମୀନଟି ମାତା ରକ୍ତ ହେଲା । ଘୋର ଜଳ ସେ ବୋଲାଇଲା । ୧୦ ।
ରଜରେ ବୀର୍ଯ୍ୟ ସେ ପଡ଼ିଲା । ସେ ରଜ ବୀର୍ଯ୍ୟକୁ ଗିଳିଲା । ୧୧ ।
ଶୁଣି ଅର୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ । ୧୨ ।
ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ
ନାମ ବିଂଶୋଽଧ୍ୟାୟଃ ।



## ଏକବିଂଶ ଅଧ୍ୟାୟ

ଅର୍ଜୁନ ଉବାଚ—ପୁଣି ଅର୍ଜୁନ ପଚାରିଲା । କ୍ଷଣସ୍ଥ ଶତ୍ରେ
ସେ ପୁଚ୍ଛିଲା ॥ ଚରନ୍ତେ ସମୁଦ୍ରର ଜଳେ । ଜାଲେ ପଡ଼ିଲା ସ୍ୱଳ୍ପ-
କାଳେ ॥ ତତକ୍ଷଣେ ନିଶିର ସେ ହୋଇଲା । ଯାଦବକୁଳ ନାଶକଲା
ଏ ଅର୍ଥ କହ ଭଗବାନ । ନମଇଁ ତୁମ୍ଭର ଚରଣ ॥ ଶ୍ରୀ ଭଗବାନୁ-
ବାଚ—ଶୁଣ ଅର୍ଜୁନ ମନଦେଇ । କହିବା ଭୂଗୋଳକୁ ଫେଇ ॥
ସମୁଦ୍ର ମାତା ପଦ୍ମ ହେଲା । ତହିଁରେ ମୀନ ଚରୁଥିଲା । ୭ ।
କାଳକୁ ଜାଲ ବୋଲି କହି । ଜାଲ ବୋଲନ୍ତେ ମାୟା ହୋଇ ॥
ବନ ବୋଲନ୍ତେ ଦେହ ଜାଣ । ତତକ୍ଷଣେ ନିଶିରଟି ତିଗୁଣ । ୯ ।
ରଜୋଗୁଣରେ ଯେ ପଡ଼ିଲା । ଏଣୁଟି ଜୀବ ନାଶଗଲା । ୧୦ ।
ମାତା ଗର୍ଭରେ ଯେତେ ଦିନ । ଦିବସ ହୋଇଥାଇ ପୁଣ ॥
ପୃଥ୍ୱୀରେ ଯେଣୁ ସେ ପଡ଼ିଲା । କାଳରାତ୍ରୀ ଯେ ଅବର୍ତ୍ତିଲା ॥

ଧୀବର ବାମ ଜାଲ ହୋଇ । ସେ ବାମ ଜାଲ ଯେ ବୋଲାଇ । ୧୩ । ଶୁଣି ଅର୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ । ୧୪ । ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଏକବିଂଶୋଽଧ୍ୟାୟଃ ।

—※—

## ଦ୍ୱାବିଂଶ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ଶିରେ କରଯୋଡ଼ି । କହଇ ପ୍ରଭୁ ପାଦେ ପଡ଼ି । ୧ । ଯେ ଲୌହ ଚୂର୍ଣ୍ଣ ପଡ଼ି ଜଳେ । ଭାସିଲା ସମୁଦ୍ର କଲ୍ଲୋଳେ । ତୀରେ ଲାଗନ୍ତେ ଲୌହଚୂର୍ଣ୍ଣ । ଜନ୍ମିଲା ଏରକାର ବନ । ଏ କଥା କହ ଦଇତ୍ୟାରି । ଶୁଣିଲେ ଜିବ ମୁଁ ନିସ୍ତରି । ଶ୍ରୀ ଭଗବାନୁବାଚ—ଜଳ ଯେ ମାତାପଦ୍ମ କନ୍ଦ । ଚୂର୍ଣ୍ଣ ଯେ ପିତାବୀଜ ହୋଇ । ରଜରେ ବୀଜ ଯେ ପଡ଼ିଲା । ଅନେକ ବନ ଭାସୁଥିଲା । ତୀର ବୋଲନ୍ତେ ଯାହା କହି । ସେଠାରୁ ଶରୀର ବହଇ । ତ୍ରିଗୁଣ ଭାବ ଆଚରିଲା । ଏଣୁ ଏ ଜୀବ ନାଶ ଗଲା । କହଇ ବଳରାମ ଦାସ । ବ୍ରହ୍ମାଣ୍ଡ-ଭୂଗୋଳ ପ୍ରକାଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରିଅର୍ଜୁନ ସମ୍ବାଦେ ନାମ ଦ୍ୱାବିଂଶୋଽଧ୍ୟାୟଃ ।

—※—

## ତ୍ରୟୋବିଂଶ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ଯୋଡ଼ି ବେନି କର । କହଇ ଶ୍ରୀକୃଷ୍ଣ ଛାମୁର । ଅଦ୍ଭୁତ ଦ୍ୱାରକା ନଗରେ । ଘୋର ଉତ୍ପାତ ଭୟଙ୍କରେ । ଗୋବିନ୍ଦ ଭୁଜଦଣ୍ଡ ବଳେ । ଯାଦବେ ଥାନ୍ତି ସୁଖ-ଭୋଳେ । ଏଜୀବ କେମନ୍ତେ ନିସ୍ତରେ କହିବେ ହେଉଛି ଶ୍ରୀମୁଖରେ ଦ୍ୱାରକାଭୁବନ କେ କହି । ନିର୍ଣ୍ଣୟ କରି କହ ଫେରି । ଗୋବିନ୍ଦ

ଭୁଜଦଣ୍ଡ କହି । ଯାଦବ କୁଳେ ସୁଖେ ରହି । ୭ । ହେ ପଦ୍ମ କମଳ ଲୋଚନ । ମୋ ପାପ କର ବିମୋଚନ । ୭ । ଶ୍ରୀ ଭଗବାନୁବାଚ – ଶୁଣ ଅର୍ଜୁନ ଚିତ୍ତ ଦେଇ । କହିବା ଭଗବତ ଫେଇ । ୮ । ଦ୍ୱାରକା ବୋଲି ଯେଉଁ ସ୍ଥାନ । ମାତାର ପଦ୍ମ ବୋଲି ଜାଣ । ରଜରେ ବିନ୍ଦୁ ଯେ ମିଶଇ । ପବନ ଭୁଜଦଣ୍ଡ କହି । ଜୀବର ପ୍ରକୃତି ଯେ ଜାଣ । ଜାତ ହୁଅଇ ତହୁଁ ପୁଣ । ପଦ୍ମରେ ସୁଖେ ବିହରଇ । ବ୍ରହ୍ମାଣ୍ଡଭୂଗୋଳ କହଇ । କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳର ରସ । ୧୨ । ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ତ୍ରୟୋବିଂଶୋଽଧ୍ୟାୟଃ ।



## ଚତୁର୍ବିଂଶ ଅଧ୍ୟାୟ

ଅର୍ଜୁନ ଉବାଚ—ବୋଲଇ ଶୁଣ ଦ୍ୱାରକାସ୍ୱାମୀ । ଅନନ୍ତ ଶିରେ କିଛି ଦେଇ । ୧ । ପୂର୍ବେ ଯେ ବିଦେହ ମଣ୍ଡଳେ । ନିମି ରାଜାର ଯଜ୍ଞ ଶାଳେ । ଦିବ୍ୟପୁରୁଷ ନବଋଷି । ମିଳିଲେ ଯଜ୍ଞଶାଳେ ଆସି । ଏ ଅର୍ଥ ଫେଡ଼ି ମୋତେ କହ । ଶୁଣିଲେ ଫିଟିବ ସନ୍ଦେହ । ନିମି ରାଜାଟି କେ ହୋଇଲା । କେମନ୍ତେ ଯଜ୍ଞଶାଳ କଲା । ସେ ନବଋଷି କେ କେ କହ । କହିଲେ ଫିଟିବ ସନ୍ଦେହ ଶ୍ରୀ ଭଗବାନୁବାଚ—ଶୁଣ ଅର୍ଜୁନ ସାଧୁଚେତା । ତୋତେ କହିବା ସେହି କଥା । ୭ । ମାତାର ପଦ୍ମ ପୂର୍ବେ କହି । ବିଦେହ ରାଜା ଜୀବ ନତାଇ । ନିମି ରାଜାଟି ସେ ଅଟଇ । ଯଜ୍ଞଶାଳଟି ପଦ୍ମ କହି । ରଜରେ ବୀଜ ଯୁକ୍ତ ହେଲେ । ସେ ମହା ଯଜ୍ଞ ବୋଲାଇଲେ । ଏ ନବ ଋଷି ନବ ଦ୍ୱାର । ମନ ଚୈତନ୍ୟ ଜ୍ଞାନ ସାର । ଏହାଙ୍କୁ ନବଋଷି କହି । ଶୁଣ ଅର୍ଜୁନ ମନ ଦେଇ ।

ଶିବର ବିଳଗ୍ରାମ ବାସ । ସେ ନବ ମୁନି ପାଦେ ଅଣ । ୧୬ ।
ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହର ଅର୍ଜୁନ ସମ୍ବାଦେ ନାମ ଚତୁର୍ବିଂଶୋଽଧ୍ୟାୟଃ ।

—※—

## ପଞ୍ଚବିଂଶ ଅଧ୍ୟାୟ

ଅର୍ଜୁନ ଉବାଚ—ଅଗ୍ନି ଯେ କୁଣ୍ଡ ମଧ୍ୟେ ଥିଲେ । ବିପ୍ରଙ୍କ ସଙ୍ଗତେ ଉଠିଲେ । ୧ । ଆନନ୍ଦ ମନେ ନୃପବର । ପୁଚ୍ଛିଲା ମୁନିଙ୍କ ପଯ୍ୟର । ଅଗ୍ନି କେ କୁଣ୍ଡ କେ ହୋଇଲା । କେମନ୍ତେ ସଙ୍ଗତେ ଉଠିଲେ । ବିପ୍ରଗଣଟି କେ ବୋଲାଇ । ନୃପତି କେ ଅବା ଅଟଇ । ମନ ସଙ୍ଗରୁ ଯେ ଖସିଲା । ପଦ୍ମ ମଧ୍ୟରେ ବାହାରିଲା । ଏ ଅର୍ଥ କହ ଭଗବାନ । ମୁଁ ତୁମ୍ଭ ଚରଣେ ଶରଣ । ଶ୍ରୀ ଭଗବାନୁବାଚ—କହନ୍ତି କମଳାର ବର । ଶୁଣ ହେ ବୀର ଧନୁର୍ଦ୍ଧର । ମନ ସଙ୍ଗରେ ଯେ ଖସିଲା । ପଦ୍ମ ମଧ୍ୟରେ ବାହାରିଲା । ବୀଜ ଯେ ରଜଟି ପ୍ରମାଣ । ତୋ ହୃଦେ ଗଣ୍ଠି କର ଘେନ । କହଇ ବିଳଗ୍ରାମ ବାସ । ସେ ଅଗ୍ନିକୁଣ୍ଡେ ମୋର ଅଂଶ । ୧୦ । ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳବର୍ଣ୍ଣନେ ହର ଅର୍ଜୁନ ସମ୍ବାଦେ ନାମପଞ୍ଚବିଂଶୋଽଧ୍ୟାୟଃ ।

—※—

## ଷଡ଼ବିଂଶ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ଶୋକ ଗଦ ଗଦେ । ପଡ଼ିଲେ ଶ୍ରୀକୃଷ୍ଣଙ୍କ ପାଦେ । କୃଷ୍ଣର ପାଦ ନଖପନ୍ତି । ଚନ୍ଦ୍ରକିରଣ ପ୍ରାୟେ ଜ୍ୟୋତି । କୃଷ୍ଣର ପାଦ କେ ହୋଇଲା । ଚନ୍ଦ୍ର ପ୍ରାୟେକ ଝଟକିଲା ଏ ଅର୍ଥ ଫେଡ଼ି ମୋତେ କହ । ମନରୁ ଫେଡ଼ ମୋ ସନ୍ଦେହ । ଶ୍ରୀ ଭଗବାନୁବାଚ—କହନ୍ତି କମଳ ଲୋଚନ । ଶୁଣ ଭକତ ଦେଇ ମନ । କୃଷ୍ଣଙ୍କ ଅଟେ ଶୂନ୍ୟେ ବାସ । ଜ୍ୟୋତି ରୂପରେ

ଟିସେ ପ୍ରକାଶି । ଅରୂପ ଶୂନ୍ୟ ବ୍ରହ୍ମଜ୍ୟୋତ । ସେ ପାଦେ ବିଶି
ନଖପନ୍ତି । ସେଠାରୁ ବନ୍ଦୁ ଯାକୁ ଖସି । ଚନ୍ଦ୍ରକିରଣ ପ୍ରାୟେଦଶି
ଶୁଣି ଅର୍ଜ୍ଜୁନ ହେଲେ ତୋଷ ଯେ ବ୍ରହ୍ମ ପାଦେ ଦେଇ ଅଣ ।
ବ୍ରହ୍ମାଣ୍ଡ-ଭୂଗୋଳ ପ୍ରକାଶ । ଭଣିଲେ ବଳରାମ ଦାସ । ୧୦ ।
ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ
ନାମ ଷଡ଼ବିଂଶୋଽଧ୍ୟାୟଃ

— — —

## ସପ୍ତବିଂଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବୋଲେ ଭବଗ୍ରାହୀ । ମୁଁ ତୁମ୍ଭ
ଚରଣେ ପୁଚ୍ଛଇ ।୧। ଈଶ୍ୱର ତେଜ ଅନ୍ତରାଳ । ତକ୍ଷଣେ ଉପୁଜିଲା
କାଳ । କାଳସ୍ୱରୂପ ଜାତ ହେଲା । ବସ୍ତୁର ମାୟା ନ ପଡ଼ିଲା ।
କେମନ୍ତେ ଅନ୍ତରାଳ ହେଲା । କାଳକୁ କେବା ଜାତ କଲା । ୪ ।
ଏ ଅର୍ଥ କହ ମୋତେ ଫେଡ଼ି । ପୁଚ୍ଛଇ ତୁମ୍ଭ ପାଦେ ପଡ଼ି ।
ଶ୍ରୀ ଭଗବାନୁବାଚ—ଶୁଣ ଅର୍ଜ୍ଜୁନ ଦେଇ ଚିତ୍ତ । ତୋତେ
କହିବା ଭେଦତତ୍ତ୍ୱ ।୬। ଈଶ୍ୱର ନିରାକାର ହରି । ଜ୍ୟୋତ ରୂପରେ
ସେ ବିହରି । ତା ଦେହୁ ବାଦୁ ଉଚ୍ଛୁଳିଲା । ଅନ୍ତରାଳରେ ସେ
ପଶିଲା । କାଳଟି ଅର୍ଦ୍ଧମାତା କହି । କାଳରୁ ଜୀବ ଆତ୍ମା ହୋଇ ।
ସତ୍ତ୍ୱ ଗୁଣରେ ସେ ପାଳଇ । କାଳ ରୂପରେ ସଂହାରଇ । କହଇ
୯ ନ ରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ଇତି ଶ୍ରୀ ବ୍ରହ୍ମାଣ୍ଡ-
ଭୂଗୋଳ ବର୍ଣ୍ଣନେ ହରିଅର୍ଜ୍ଜୁନ ସମ୍ବାଦେ ନାମସପ୍ତବିଂଶୋଽଧ୍ୟାୟଃ ।

— ※ —

## ଅଷ୍ଟବିଂଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ ।—ଅର୍ଜ୍ଜୁନ ଶୁଣି କୃତକୃତ୍ୟ । ଶିରେ ଯୋଡ଼ି
ବେନି ହସ୍ତ ।୧। ଯେସନେ ଜଳବିମ୍ବ ଜଳେ । ରୂପ ତୁହାଣେ ବାୟୁ

ବଳେ । ୨ । କେମନ୍ତେ ଜଳବିମ୍ବ ହେଲା । ବାୟୁରେ ପ୍ରକାଶ ହୋଇଲା ॥ ବିରାଟ ପୁରୁଷ ଯେ କହ । ସେଠାରେ ପ୍ରକାଶ ହୁଅଇ ଭକତ ବନ୍ଧୁ ତୁମ୍ଭେ ହରି । କହିବ ଭୂଗୋଳ ବିସ୍ତାରି ॥ ଶ୍ରୀଭଗ-ବାନୁବାଚ – ଶୁଣ ଅର୍ଜ୍ଜୁନ ହୋଇ ତୋଷ । ତୋ ଆଗେ କରିବ ପ୍ରକାଶ ॥ ଜଳଟି ମାତା ରଜ ହୋଇ । ବୀଜଟି ବିନ୍ଦୁ ସେ ବୋଲାଇ ବାୟୁବଳରେ ଜାତ ହୋଇ । ବିରାଟ ଜ୍ୟୋତରୂପେ ଥାଇ । ୮ । ରଜୋବୀଜର ମଧ୍ୟେ ମୁହିଁ । ବିରାଟ ରୂପେ ଥିଲି ରହି ॥ ଶୁଣି ଅର୍ଜ୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ । ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଅଷ୍ଟ-ବିଂଶୋଽଧ୍ୟାୟଃ ।

— — —

## ଊନତ୍ରିଂଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ – ଅର୍ଜ୍ଜୁନ ବୋଲଇ ଗୋସାଇଁ । କଥାଏ ପଚାରିବି ମୁହିଁ ॥ ଦ୍ୱାଦଶ ସୂର୍ଯ୍ୟ ଶୂନ୍ୟେ ରହେ —ତିନି- ଭୁବନ ତେଜେ ଦହେ । ୨ । ଅଗ୍ନି ଯେ କାହୁଁ ଜାତ ହେଲା । ପାତାଳ ସମସ୍ତ ଦହିଲା ॥ ଦହଣ ଗଗନ ମିଳଇ । ଧାରିବରଷେ ଘୋର ବାଇ ॥ ହୁତାଶନ ତିନି କେ ହୋଇଲା । ଧାରା କେମନ୍ତେ ବରଷିଲା ॥ ଦ୍ୱାଦଶ ସୂର୍ଯ୍ୟଟି କେମନ୍ତେ । ଫେଡ଼ି କହିବ ଜଗନ୍ନାଥେ ॥ ଶ୍ରୀଭଗ-ବାନୁବାଚ —ପ୍ରଳୟ କାଳର ଏ କଥା । ଶୁଣ ଅର୍ଜ୍ଜୁନ ସାଧୁ-ଚେତା ॥ ଦ୍ୱାଦଶ ଅଙ୍ଗୁଳି ପବନ । ଦ୍ୱାଦଶ ସୂର୍ଯ୍ୟ ବୋଲି ଜାଣ ॥ ନାସାର ଅଗ୍ରେ ସେ ବସଇ । ତା ମୁଖୁଁ ଅଗ୍ନି ଜାତ ହୋଇ । ୯ । ପାଦୁହୁଦୟ ଶିର କହି । ଏ ତିନି ଭୁବନ ଦହଇ ॥ ପବନ ମେଘମାଳ ହେଲା । ଗଗନ କପାଳକୁ ଗଲା ॥ ସେଥିରୁ ପବନ ଛାଡ଼ଇ । ସେଠାରେ ପ୍ରବେଶ ହୁଅଇ ॥ ଅନନ୍ତ ଜ୍ୟୋତି ରୂପଜାଣ

ସେଠାରୁ ଅଗ୍ନି ଜାତ ପୁଣ ॥ ଅଗ୍ନି କର୍ଣ୍ଣିକା ଯେ ସମ୍ପୂର୍ଣ୍ଣ । ଶରୀର ପାତାଳ ଯୋଡ଼ନ୍ତି ।୧୪। ସମ୍ପୂର୍ଣ୍ଣ ମଧ୍ୟ ସନ୍ଧି ପାତ । ଜଳ ବଢ଼େ ନିରଘାତ ॥ କାଳ ବିକାଳ ଦେବ ଧାରି । ସ୍ୱତନ୍ତ୍ର ଯେହ୍ନେ ଜଳ ଧାରି ॥ ଜଳଟ ପବନ ପ୍ରକାଶ । ହସ୍ତୀ ଶୁଣ୍ଢ ଯେ ନାମ ତାର ।୧୬। ଶୁଣି ଅର୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଊନତ୍ରିଂଶୋଽଧ୍ୟାୟଃ ।

---

## ତ୍ରିଂଶ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ବୋଲଇ ଗୋସାଇଁ । ସନ୍ଦେହ ଚିତ୍ତେ ପଶୁଅଛି ॥ ଜଳ ବଢ଼ୁଁଲେ ସୃଷ୍ଟି ନାଶ । ତା ଦେଖି ବିରାଟ ପୁରୁଷ ॥ ତତକ୍ଷଣେ ସ୍ଥୂଳ ତ୍ରିଭୁବନ । ବ୍ରହ୍ମଶରୀରେ ହେଲେ ଲୀନ ॥ ତିନି ଭୁବନ ସେ ଛାଡ଼ିଲେ । କେମନ୍ତେ ବ୍ରହ୍ମରେ ମିଳିଲେ । ୪ । କେହ୍ନେ ପ୍ରଳୟ ନ ସହିଲା । ମହତ ଦେହେ ବିସ୍ତାରିଲା । ୫ । ପ୍ରଳୟ କେମନ୍ତେ ବିସ୍ତାରି । ବ୍ରହ୍ମାଣ୍ଡ ଦିଏ ଧ୍ୱଂସ କରି ॥ ପରମ ଆତ୍ମା କେ ବୋଲାଇ । ବିରାଟ ପୁରୁଷଟି କେହ୍ନ ॥ କେମନ୍ତେ ପ୍ରଳୟ ହୋଇଲା । ସଂଶୟ ମୋ ଚିତ୍ତେ ରହିଲା ॥ ଶ୍ରୀ ଭଗବାନୁବାଚ—ଅର୍ଜୁନ ବାକ୍ୟେ ଭଗବାନ । କହନ୍ତି ଭୂଗୋଳ ବଚନ ॥ ଜଳ ଯେ ସନ୍ନିପାତ କହି । ବହୁଳ ଅଗ୍ନିରୁ ବହଇ ॥ ଡାହାଣ ବାୟୁ ଅଗ୍ନି ଜାଣ । ବାମ ନାସିକା ଜଳ ପୂର୍ଣ୍ଣ ॥ ଡାହାଣ ନାସା ଅଗ୍ନି ବହି । ବାମରେ ଏକ ବହୁଥାଇ ॥ ଅନଳ ଜଳ ଏକ ହେଲା ଏମନ୍ତେ ବ୍ରହ୍ମାଣ୍ଡ ଦହିଲା ॥ ପରମ ବିରାଟ ସେ ହୋଇ । ତିନି ଭୁବନେ ସେ ଦହଇ ।୧୦। ତତକ୍ଷଣେ ପାଦରୁ ଛାଡ଼ଇ । ନାଭିରେ ପ୍ରବେଶହୁଅଇ ॥ ସେଠାରୁ ବିରାଟ ଯେ ହେଲା । ହୃଦୟ କଣ୍ଠପାଏ

ଗଲା । ଚକ୍ଷୁରେ ନିରଞ୍ଜନ ବାସ । ପରମ ଅକ୍ଷରେ ପ୍ରବେଶ । ପ୍ରଳୟ ସହି ନ ପାରିଲା । ମହତ ଦେହେ ବିଶ୍ରାମିଲା । କହଇ ବଳରାମ ଦାସ । ସେ ନିରଞ୍ଜନେ ମୋର ଆଶ । ୧୯ । ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ତ୍ରିଂଶୋଽଧ୍ୟାୟଃ ।

---

## ଏକତ୍ରିଂଶ ଅଧ୍ୟାୟ

ଅର୍ଜୁନ ଉବାଚ—ଶ୍ରୀକୃଷ୍ଣ ପାଦେ ଦେଇ ମତି । ପୁଣି ଅର୍ଜୁନ ପଚାରନ୍ତି । ୧ । ଶୁଣ ହେ ପ୍ରଭୁ ଲକ୍ଷ୍ମୀପତି । ଏ ଅର୍ଥ କହି ଫିଟୁ ଭ୍ରାନ୍ତି ॥ କୋଟିବ୍ରହ୍ମାଣ୍ଡ ଏହିମତେ । ଯାହାର ଦେହୁ ହୁଏ ନିତେ ॥ ପବନ ଦଶଦ୍ୱାରେ ଗଲା । କେମନ୍ତେ ଅଗ୍ନିରେ ମିଳିଲା ॥ କୋଟି ବ୍ରହ୍ମାଣ୍ଡ କେ ସର୍ଜଇ । କାହାର ଦେହେ ନ ମିଶଇ । ୫ । ଏ କଥା ଫେଡ଼ି ମୋତେ କହ । ମନରୁ ଫେଡ଼ ମୋ ସନ୍ଦେହ । ଶ୍ରୀ ଭଗବାନୁବାଚ—କହନ୍ତି ପ୍ରଭୁ ଭଗବାନ । ଅର୍ଜୁନ ଶୁଣ ତତ୍ତ୍ୱଜ୍ଞାନ । ମହାଶୂନ୍ୟଟି ଯାହା କହୁ । ଅଗ୍ନିର ରୂପ ସେ ଅଟଇ । ସେଠାରୁ ପବନ ଜନ୍ମଇ । ବ୍ରହ୍ମାଣ୍ଡ ସର୍ବ ଘଟେ ଥାଇ ॥ ମହାଶୂନ୍ୟଟି ଚକ୍ଷୁ ଜାଣି । ଦଶଦ୍ୱାରେ ଯାଏ ପବନ ॥ ସର୍ବ ଦ୍ୱାରରେ ଯେ ବହଇ । ଚକ୍ଷୁ ଅନଳେ ନ ମିଶଇ । ଜ୍ୟୋତରୂପ ଯେ ମହାଶୂନ୍ୟ । ତାଠାରୁ କୋଟି କୋଟି ଜନ୍ମ । କୋଟି କୋଟି ଯେ ଜନ୍ମ ହୋନ୍ତି । ପୁଣି ଅନଳେ ନ ମିଶନ୍ତି ॥ ଯେ ପ୍ରାଣୀ ଗୁରୁ ସେବା କରେ । ଅନନ୍ତ ବସଇ ସେହି ପୁରେ ॥ କହଇ ବଳରାମ ଦାସ । ଯେ ଜ୍ୟୋତି ବ୍ରହ୍ମପାଦେ ଆଶ । ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଏକତ୍ରିଂଶୋଽଧ୍ୟାୟଃ ।

---

# ଦ୍ୱାତ୍ରିଂଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବୋଲେ ଭଗବାନ । କହ ହେ ଭାଗବତ ଧର୍ମ ॥ ପୂର୍ବେ ଯେ ଦକ୍ଷ ପ୍ରଜାପତି । ତାର କୁମାରୀ ନାମ ମୂର୍ତ୍ତି ॥ ଧର୍ମର ପତ୍ନୀ ଯେ ଯୁବତୀ । ବସ୍ତୁ ତାହାର ଗର୍ଭଗତେ ॥ ଅରୂପ ହୋଇ ଯେବେଥିଲା । କେମନ୍ତେ ରୂପରାଶି ହେଲା ॥ ବିଜୁଳି ପ୍ରାୟେକ ଖସିଲା । କେବଣ ଠାରେ ତପ କଲା ॥ ସେ ତପ ଦେଖି ଇନ୍ଦ୍ରମନ । ପେଶିଲା ଯେ ଗନ୍ଧର୍ବଗଣ ॥ ଭଗ୍ନ କରିବାକୁ ସେ ତଳେ ସ୍ତମ୍ଭିତ ସେଠାରେ ଜାଣିଲେ ॥ ଏକଥା କହ ବନମାଳି । ତୋ ନାମ ପଥକୁ ସଞ୍ଚାଳି ॥ ଶ୍ରୀ ଭଗବାନୁବାଚ – କହନ୍ତି କମଳାର ବର । ଶୁଣ ହେ ଭକତ ଶେଖର ॥ ପୂର୍ବେ ଯେ ମାତା ପଦ୍ମେ ଥାଇ ବିଜୁଳି ପ୍ରାୟ ବିରାଜଇ ॥ ତେଜରେ ବୀଜ ଯେ ପଡ଼ିଲା । ସେ ପୁଣି ଗର୍ଭରେ ଧରିଲା ॥ ବୀଜଟି ବ୍ରହ୍ମାବସ୍ତୁ ହୋଇ । ସେନାରୀ ଗର୍ଭରେ ରହଇ ॥ ରଜରେ ବୀଜ ଯୁକ୍ତ ହେଲା । ପଦ୍ମବନରେ ସେ ରହିଲା ॥ ଅତି ନିର୍ମଳ ସେହୁ ସ୍ଥାନ । ଗହନ କାନନ ଯେ ବନ ॥ ସେ ବନ ମଧ୍ୟେ ତପେ ପଶି । ସେ ନର ନାରାୟଣ ଋଷି ॥ କାମ କ୍ରୋଧକୁ ଦୂର କରି । ଶୂନ୍ୟ ବ୍ରହ୍ମରେ ଚିତ୍ତ ଧରି । ଆହାର କରି ରାମ ନାମ । ମହାଶୂନ୍ୟରେ ଦେଇ ମନ ॥ ଇନ୍ଦ୍ରକୁ ଇନ୍ଦ୍ର ବୋଲି କହୁ । ମନ ଇନ୍ଦ୍ରିୟ ସେ ବୋଲାଇ ॥ ମନ ଇନ୍ଦ୍ରିୟ ବଶ କଲେ । ଭୟରେ ପଶି ନ ପାରିଲେ । ମନରୁ ଦୂତ କାମଜାଣ । ଅବର ତୀକ୍ଷ୍ଣ ପଞ୍ଚବାଣ । କାମ କୋଦଣ୍ଡ ଗୁଣ ଦେଇ । ବିନ୍ଧିଲା କୋପଭର ହୋଇ ॥ ସେ ବାଣ ଶରୀରେ ବାଜିଲା । ତପସମାଧି ଭଗ୍ନହେଲା ॥ ଦିବ୍ୟଲୋଚନେ ସେହୁ ଗୁହିଁ । ଇନ୍ଦ୍ରଗଣକୁ ଆଜ୍ଞା ଦେଇ ॥ ମହାଶୂନ୍ୟରେ କନ୍ୟା ଥିଲା । ଏକ କନ୍ୟାଏ ଯାଚିଦେଲା ॥ କନ୍ୟାଟି 'ରୀ' ଅକ୍ଷର ଜାଣ । ମୋହିଲା ସ୍ୱର୍ଗର ଭୁବନ ॥ ଶୁଣି ଅର୍ଜ୍ଜୁନ ହେଲେ ତୋଷ ॥

ଭଣିଲେ ବଳରାମ ଦାସ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଦ୍ୱାବିଂଶୋଽଧ୍ୟାୟଃ ।

—※—

## ତ୍ରୟୋବିଂଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ଯୋଡ଼ି କରତଳ । ପଡ଼େଗୋବିନ୍ଦ ପାଦତଳ ॥ ଟହମେ ମୀନରୂପ ହୋଇ । ଧରଣୀଭାର ଶିରେ ବହି ॥ ଭୂମିପାତାଳେ ଥିଲା ମଜ୍ଜି । ପ୍ରଳୟ କାଳେ ଜଳେ ମଜ୍ଜି ॥ ଶୂକର ରୂପେ ପଦ୍ମକଲେ । ଭୂମି ତୋଳିଲେ ଦନ୍ତ ଶିଖେ ॥ ପ୍ରଳୟ ଜଳ କେ ହୋଇଲା । ଭୂମି ପାତାଳେ ହଜିଥିଲା ॥ ଶୂକର ରୂପ ସେ ଧରିଲେ । କେମନ୍ତେ ଭୂମିକି ତୋଳିଲେ ॥ ଏ ଅର୍ଥ କହ ଭବଗ୍ରାହୀ । ମୁଁ ତୁମ୍ଭ ଚରଣେ ସେବଇ । ଶ୍ରୀ ଭଗବାନୁବାଚ— ଶୁଣ ଅର୍ଜ୍ଜୁନ ନେଇ ମନ । ତୋତେ କହିବା ଦିବ୍ୟଜ୍ଞାନ ॥ ପ୍ରଳୟ ବୋଲି ମାତା ରଜ । ଆବର ଜଳ ଅଟେ ବୀଜ ॥ ରଜରେ ବୀଜ ଯେ ପଡ଼ିଲା । ଅନେକ ଦିନ ଭାସୁଥିଲା ॥ ସେଠାରେ ମୃତ୍ୟୁପ୍ରାୟ ହୋଇ । କାମ ଯେ ଶଙ୍ଖାସୁର କହି ॥ ଶୂକର ଶରୀର ଧରିଲା । ପବନ ଦନ୍ତରେ ବହିଲା ॥ କାମ କ୍ରୋଧହିଁ ପଛେ ଅସି । ଶରୀରେ ବାହାରିଲେ ପଶି ॥ ଇନ୍ଦ୍ରିଙ୍କ ଅଗ୍ନି ସ୍ଥାପିଲେ । ଦୁର୍ଲ୍ଲଭ ସୁଖେ ସେ ରହିଲେ ॥ କହଇ ବଳରାମ ଦାସ । ଶୂକର ପାଦେ ମୋର ଆଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ତ୍ରୟୋବିଂଶୋଽଧ୍ୟାୟଃ ।

—※—

## ଚତୁର୍ବିଂଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ହୋଇ ଗଦ ଗଦ । ସାନନ୍ଦେ ଧରି କୃଷ୍ଣପାଦ ॥ କ୍ଷୀର ସିନ୍ଧୁ ଜଳମଧ୍ୟେ । ମନ୍ଦର ଆଣି ସୁଖ

ସାଧେ ॥ ଏ ଅର୍ଥ କହ ଭଗବାନ । ନମସ୍ତେ ପ୍ରଭୁ ମହାଶୂନ୍ୟ ॥ ଶ୍ରୀ ଭଗବାନୁବାଚ—ଶୁଣ ଅର୍ଜ୍ଜୁନ ସାଧୁଚେତା । ତୋତେ କହିବା ତତ୍ତ୍ୱ କଥା ॥ ଗମ୍ଭୀର ସିନ୍ଧୁ ଯାହା କହି । ମାତ୍ରାର ପଦ୍ମ ସେ ଅଟଇ ॥ ମନ ଯେ ବ୍ରହ୍ମବୀଜ ହେଲା । ରଜରେ ଯାଇ ଯୁକ୍ତ ହେଲା ॥ ପରମ ମହାଗିରି ଜାଣ । କୂର୍ମରୂପରେ ସେ ପ୍ରମାଣ ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଚତୁର୍ବିଂଶୋଽଧ୍ୟାୟଃ ।



## ପଞ୍ଚବିଂଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ କୃତକୃତ୍ୟ ହୋଇ । ଶ୍ରୀକୃଷ୍ଣ ଚରଣେ ପୁଚ୍ଛଇ ॥ ହେ କୃଷ୍ଣ ଅରତ ଭଞ୍ଜନ । କଥାଏ ପଡ଼ିଲା ମୋ ମନ ॥ ଗଜ କୁମ୍ଭୀର ଯୁଦ୍ଧକାଳେ । ସେ ହରି ଚକ୍ର ଅନ୍ତରଳେ ॥ କୁମ୍ଭୀର ଗଜକୁ ଗ୍ରାସଇ । ଏ ଜ୍ଞାନ ମୋତେ କହ ଫେଡ଼ି ॥ କୁମ୍ଭୀର କେଉଁଠାରେ ଥିଲା । ଗଜକୁ ସେହୁ ଗ୍ରାସକଲା ॥ କେମନ୍ତେ ଦୁହେଁ ଭେଟହୋଇ । କୁମ୍ଭୀର ଗଜକୁ ଗ୍ରାସଇ ॥ ଏ ଜ୍ଞାନ ଫେଡ଼ି ମୋତେ କହ । ଶୁଣି ଅକୂଳ ମୋର ଦେହ ॥ ଶ୍ରୀ ଭଗବାନୁବାଚ-କହନ୍ତି କମଳ ଲୋଚନ । ଶୁଣ ଅର୍ଜ୍ଜୁନ ଦେଇ ମନ ॥ ସଂସାରେ ଜୀବ ଖେଳୁ ଥାଇ । ମାୟା ମୋହରେ ଦୁଃଖ ପାଇ ॥ ପ୍ରଳୟ କାଳ ଯହୁଁ ହେଲା । ଜୀବକୁ କାଳ ଅନ୍ୱେଷିଲା ॥ ଜୀବରୁ କାଳ ଜାତ ହୋଇ । କୁମ୍ଭୀର ତାହାକୁହିଁ କହି ॥ ପରମ ଗଜ ବୋଲି ଜାଣି । ତ୍ରିକୂଟେ ଭେଟ ହୋନ୍ତି ପୁଣି ॥ ତ୍ରିକୂଟ ତ୍ରିବେଣୀଅଟଇ ॥ କାଳିନ୍ଦୀ ହ୍ରଦ ସେ ବୋଲଇ ॥ ହ୍ରଦରୁ ହଂସ ଟିବା କାଳେ । କୁମ୍ଭୀର ଗ୍ରାସେ ସେତେବେଳେ ॥ ଜୀବ ଚରଣକୁ ଧରିଲା । ଅତଙ୍କେ ଗଜ

ଡାକଦେଲ୍ୱ ॥ ଶୂନ୍ୟ ଶବଦ ଚକ୍ର ଜାଣ । ଅମ୍ଭେ ପେଷିଲୁ ତତକ୍ଷଣ ॥ କାଳ ଗ୍ରାହାଙ୍କୁ ନାଶ କର । ପରମ-ଗଜଙ୍କୁ ଉଦ୍ଧର ॥ ଶୁଣି ଅର୍ଜୁନ ହେଲେ ତୋଷ । କହଇ ବଳରାମ ଦାସ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ପଞ୍ଚତ୍ରିଂଶୋଽଧ୍ୟାୟଃ ।

—*—

## ଷଟ୍‌ତ୍ରିଂଶ ଅଧ୍ୟାୟ

ଅର୍ଜୁନ ଉବାଚ—କହେ ଅର୍ଜୁନ ଶୁଣ ହରି । କଥାଏ କହ ଦୟାକରି ॥ କଶ୍ୟପ ଋଷି ଯଜ୍ଞ ମେଳ । ଷଷ୍ଠୀ ସହସ୍ର ବାଲଖିଲ୍ୟା ॥ କଶ୍ୟପ ଋଷି କେ ବୋଲଇ । ବାଲଖିଲ୍ୟାଙ୍କ କେ ଅଟଇ ॥ ଏଅଥ କହ ଭଗବାନ । ନମଇଁ ତୁମ୍ଭର ଚରଣ ॥ ଶ୍ରୀ ଭଗବାନୁବାଚ— କହନ୍ତି ପ୍ରଭୁ ଭାବଗ୍ରାହୀ । ଶୁଣ ତୁ ଯୁଧିଷ୍ଠିର ଭାଇ ॥ କଶ୍ୟପ ଋଷି ପୂର୍ବେ ଥିଲ । ଗଙ୍ଗାକୂଳରେ ତପକଲ । ୬ । ଉର୍ବଶୀ ସ୍ୱର୍ଗପୁରରୁ ଯାଇ । ଗଙ୍ଗାରେ ସ୍ନାନ ସେ କରଇ ॥ ଋଷି ଦେଖିଣ ମୋହ ହୋଇ । ତତକ୍ଷଣେ ବିନ୍ଦୁ ଉଚ୍ଛୁଳଇ ॥ ତତ୍‌କ୍ଷଣେ ବିନ୍ଦୁ ଉଚ୍ଛୁଳିଲା । ସେ ବିନ୍ଦୁ ବାଲିରେ ପଡ଼ିଲା ॥ ଷାଠିଏ ସହସ୍ର ବାଲିରେ । ବାଳକ ଯବ ପ୍ରମାଣରେ ॥ ତାହାଙ୍କୁ ଋଷି ଅଜ୍ଞା ଦେଲେ । ଯଜ୍ଞକୁ କାଷ୍ଠ ଆଣି ଗଲେ ॥ ଋଷିଙ୍କ ଅଜ୍ଞା ପ୍ରମାଣରେ । ବନରୁ କାଷ୍ଠ ସେ ଅଣିଲେ ॥ ଏମନ୍ତେ ଷାଠିଏ ଯେ ପଣନ୍ତି । ବନରୁ କାଷ୍ଠ ସେ ଅଣନ୍ତି ॥ ଏକଦିନରେ ହୋଇ ମେଳ । ଅଣନ୍ତେ ବହୁ କାଷ୍ଠ ଭେଳ ॥ ଶ୍ରୀବତ୍ସ ନାମ ଯେ ମୋହର । ଗଙ୍ଗା ମୋ ପାଦରୁ ବାହାର ॥ ସେ କାଷ୍ଠ ବହି ଅଣୁଥିଲେ । ବାଳକେ ଗଙ୍ଗାରେ ପଡ଼ିଲେ । ୧୭ । ସମସ୍ତେ ହୋଇ ଏକମୁଖ । ଡାକିଲେ ନାରାୟଣ ରଖ ॥ ତତକ୍ଷଣେ ବ୍ରହ୍ମରୂପଧର । ବାଳଙ୍କ ସଙ୍କଟୁ ଉଦ୍ଧର । ୮ । କହଇ ବଳରାମ ଦାସ । ବ୍ରହ୍ମାଣ୍ଡ-ଭୂଗୋଳ ପ୍ରକାଶ ।୧୯।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଷଟ୍‌ତ୍ରିଂଶୋଽଧ୍ୟାୟଃ ।

*—

## ସପ୍ତତ୍ରିଂଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ କୃଷ୍ଣମୁଖ ଚାହିଁ । ସଂଶୟ ଫେଡ଼ ହେ ଗୋସାଇଁ ॥ ବ୍ରହ୍ମରେ କହିଲ ଏ ଅର୍ଥ । ଫେଡ଼ ବ୍ରହ୍ମାଣ୍ଡ ପଦ୍ମନେତ୍ର ॥

ଶ୍ରୀ ଭଗବାନୁବାଚ-କାୟା କଶ୍ୟପ ଉଷିଷ୍ଟ, ପ୍ରକୃତି ବାଳଖିଲ୍ୟ ବ୍ରଧାଙ୍ଗ ବସ୍ତ୍ରା ପାଦସ୍ୟ, ଶୁନ୍ୟ ଶୁନ୍ୟ ମହାଶୁନ୍ୟ ॥

ଶୁଣ ଅର୍ଜ୍ଜୁନ ମନ ଦେଇ । କହିବା ଭୂଗୋଳକୁ ଫେଇ ।୩। କାୟା ଯେ କଶ୍ୟପ ବୋଲଇ । ବାଳଖିଲ୍ୟ ପ୍ରକୃତି ହୋଇ ।୪। ବ୍ରଧାଙ୍ଗ ବସ୍ତ୍ର ପାଦସାର । ଶୂନ୍ୟ ଶବଦ ବେଦନକର ॥ ଧାଅ ଶବଦଟି ବାହାରେ । ମାଅ ଶବଦଟି ବହରେ । ୬ । ଶୂନ୍ୟ ଯେ ଅମ୍ବରେ ମିଳଇ । ମଅଟି ନିରାକାର କହି ॥ ଶୁଣି ଅର୍ଜ୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ । ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ସପ୍ତତ୍ରିଂଶୋଽଧ୍ୟାୟଃ ।

— *

## ଅଷ୍ଟତ୍ରିଂଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ କହେ ଜଗନ୍ନାଥ । କଥାଏ ପଡ଼ିଲା ମୋ ଚିତ୍ତ । ୧ । ପଶୁଏ ଥାନ୍ତି ପଶୁମେଳେ । ତାର ଜୀବନ ଅନ୍ତଃ କାଳେ । ୨ । ଧରି ଭକ୍ଷନ୍ତି ତାର ମାଂସ । କେବଳ ଅସ୍ଥି ରହେ ଶେଷ । ସେହୁ କେମନ୍ତେ ହଂସା ହେଲା । ଏ କଥା ସଂଶୟ ଲାଗିଲା ।

ଶ୍ରୀ ଭଗବାନୁବାଚ—କହନ୍ତି ଯଶୋଦା ନନ୍ଦନ । ଶୁଣ ଅର୍ଜ୍ଜୁନ ଦିବ୍ୟଜ୍ଞାନ । ୫ । ସ୍ତିରିଙ୍କି ପଶୁ ବୋଲି କହି । ପୁରୁଷ ପଶୁ ଏକ

ହୋଇ । ଉକ୍ତ ସମସ୍ତ ଯହିଁ ହୋଇ । ପ୍ରତ୍ୟକ୍ଷ ଧର ତା ଭକ୍ଷର । ଶରୀରୁ ଧାତୁ ଗଳିଯାଇ । କେବଳ ଅସ୍ଥି ମାତ୍ର ରହି ॥ ବାଧିକରେ କାଳ ଯାଇ ଗ୍ରାସେ । ଯେ ପୂର୍ଣ୍ଣ ଅନ୍ତଃକାଳେ ମିଶେ । କହଇ ବଳରାମ ଦାସ । ସୁଜନେ ଏହା ଜ୍ଞାନ ଘୋଷ । ୧୦ ।

ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମଅଷ୍ଟବିଂଶୋଽଧ୍ୟାୟଃ ।

—※—

## ଊନଚତ୍ୱାରିଂଶୋଽଧ୍ୟାୟ

ଅର୍ଜୁନ ଉବାଚ—ପୁଣି ଅର୍ଜୁନ ପାଦଧରି । କହଇ ଶୁଣ ଅହେ ହରି । ଦ୍ୱାରକାପୁରେ ସର୍ବସିଦ୍ଧି । ଯହିଁ ବିଜୟେ ଅମ୍ବୁନିଧି । ୧ । ଶୂନ୍ୟମଣ୍ଡଳ ରଥେ ଥାଇ । ଜୟ ଶବଦ ତ୍ରିଖଣ୍ଡେ ଗାଇ । ନନ୍ଦନ ବନୁ ପୁଷ୍ପ ଆଣି । ପ୍ରୋକ୍ଷଣି କରି ଗଙ୍ଗାପାଣି । ଶୂନ୍ୟମଣ୍ଡଳ ରଥ କହି । ସେ ରଥେ ଦେବେ ଥିବେ ଚହି । ଦ୍ୱାରକାପୁର କେ ଅଛଇ । ଅମ୍ବୁନିଧି ଯେ କେ ବୋଲଇ । ୬ । ନନ୍ଦନବନ କେ ହୋଇଲା । କେବଣଠାବରେ ପୁଷ୍ପ ଥିଲା ॥ ଗଙ୍ଗା ଦେବୀ ଯେ କେଉଁ ପୁଣି । କେମନ୍ତେ କଲେ ସେ ପ୍ରୋକ୍ଷଣି ॥ ନମସ୍ତେ ପ୍ରଭୁ ପୀତବାସ । ଛେଦିବ ମନର ସନ୍ଦେଶ । ୯ । ଶ୍ରୀ ଭଗବାନୁବାଚ—ଶୁଣ ହେ ଯୁଧିଷ୍ଠିର ଭାଇ । କହିବା ତୋତେ ଜ୍ଞାନ ଫେଇ । ୧୦ । ଦ୍ୱାରକା ବୋଲି ଯେଉଁ ପୁର । ମୋହର ଚକ୍ଷୁ ସେ ନିକର । ଅଷ୍ଟଦଳରେ ଅପ୍ସରଶୀ । ଏହାଙ୍କୁ ଅମ୍ବୁନିଧି କେହି । ୧୨ । ସକଳ ଭୁବନେ ଉତ୍ତମ । ମଧ୍ୟେ ବିଜୟେ ପରବ୍ରହ୍ମ ॥ ଗ୍ରାସ ଶବଦ ଅର୍ଥ ଜାଣି । ଦେବତାଙ୍କର ସେ ଅସନ ।୧୪। ନନ୍ଦନବନ ଦେହ ମୋର । ଯେ ପଞ୍ଚଭୂତ ପୁଷ୍ପସାର । ୧୫ । ଅନେକ ପ୍ରକାରେ କହିଲେ । ପ୍ରଭୁଙ୍କ ଗୁହ୍ୟାରି ସେ ଭଲେ ॥ ତାହାଙ୍କୁ ଆଜ୍ଞା ଦେଲେ ହରି । ବୋଇଲେ

ଯାଅ ମଞ୍ଚପୁରୀ ॥ ଯାବତ ଜୀବଗଣ କହି । ଏହାକୁ ନାଶି ପଡ଼େ ମୁହିଁ ॥ କହିଲେ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଊନଚତ୍ୱାରିଂଶୋଽଧ୍ୟାୟଃ ।

—※—

## ଚତ୍ୱାରିଂଶୋଽଧ୍ୟାୟ

ଅର୍ଜ୍ଜୁନ ଉବାଚ - ପୁଣି ଅର୍ଜ୍ଜୁନ ପଚାରଇ । ହେ କୃଷ୍ଣ ମୋତେ କର ସାହି । ୧ । ବ୍ରହ୍ମାଣ୍ଡେ ଚରଣ ବାଜିଲା । ଶବଦେ ପ୍ରକୃତି କମ୍ପିଲା ॥ ବ୍ରହ୍ମାଣ୍ଡ ଫାଟି ପାଦତଳେ । ଗଙ୍ଗା ପଶିଲେ ରସାତଳେ ॥ ବ୍ରହ୍ମାଣ୍ଡ କେମନ୍ତେ ଫାଟିଲା । କେ ରସାତଳରେ ପଶିଲା ॥ ତିନି ଭୁବନେ ତେତୋବରି । ଧ୍ୱଜ-ପତାକା ଚାରି ଦଶି ॥ ତିନି ଭୁବନ କେ ହୋଇଲା । ପତାକା କେଉଁ ବୋଲାଇଲା ॥ ଏ ଅର୍ଥ ଫେଡ଼ି ମୋତେ କହ । ଶୁଣିଲେ ଫିଟିବ ସନ୍ଦେହ ॥ ଶ୍ରୀ ଭଗବାନୁବାଚ— ଅର୍ଜ୍ଜୁନ ବଚନେ ଶ୍ରୀହରି । କହନ୍ତି ଭୂଗୋଳ ବିସ୍ତାରି । କହନ୍ତି କମଳଲୋଚନ । ଶୁଣ ଅର୍ଜ୍ଜୁନ ଦେଇ ମନ ॥ ବ୍ରହ୍ମାଣ୍ଡ ଭଣ୍ଡ ଭାଙ୍ଗି କହି । ନାମ ଚରଣଟି ବାଜଇ ॥ ବ୍ରହ୍ମାଣ୍ଡଭଣ୍ଡ ଭାଙ୍ଗି ହେଲା । ତହିଁରେ ଚରଣ ବାଜିଲା ।୧୧। ଶବଦ ଓଁକାର ଅଟଇ । ଶବଦେ ପ୍ରକୃତି କମ୍ପଇ ॥ ଜୀବ ବ୍ରହ୍ମଟି ଗଙ୍ଗା ହୋଇ । ରଜଟି ରସାତଳେ କହି ॥ ଶୂନ୍ୟ ଭୁବନୁ ବନ୍ଦି ଖେପି । ଧ୍ୱଜା ପତାକା ପାଦେ ଦଶି ॥ କହିଲେ ବଳରାମ ଦାସ । ମେ ଗଙ୍ଗା ପାଦେ ମୋର ଆଶ । ୧୫। ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଚତ୍ୱାରିଂଶୋଽଧ୍ୟାୟଃ ।

## ଏକଚତ୍ୱାରିଂଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ପୁଣି ଅର୍ଜ୍ଜୁନ ପଚାରଇ । ହେ ନାଥ ବ୍ରହ୍ମାଣ୍ଡ ଗୋସାଇଁ ।୧। ପୂର୍ବେ ଯେ ବିଦେହ ନଗରେ । କଥାଏ ପଡ଼ିଲା ମନରେ ।୨। ବିଦେହ ରାଜା କେ ବୋଲଇ । କିବା ତାହାର ଦେହ ନାହିଁ ॥ ରାଜ୍ୟର ନାମ କି ବିଦେହ । ଏ ବାକ୍ୟ ଫେଡ଼ି ମୋତେ କହ ॥ ଶ୍ରୀଭଗବାନୁବାଚ—ଅର୍ଜ୍ଜୁନ ବଚନେ ମୁରାରି । କହନ୍ତି ଭୂଗୋଳ ବିସ୍ତାରି ॥ ଶୁଣ ଅର୍ଜ୍ଜୁନ ମନଦେଇ । ଉଚିତ ବାକ୍ୟ ଏ ବୋଲଇ ।୩। ମାନବ ଦେହ ସର୍ବଦନେ । ଏଣୁ ଏ ଦେହଧାରୀମାନେ ॥ ଯେଣୁ ଏ ଦେହ ନ ରହିଲା । ତେଣୁ ବିଦେହ ବୋଲାଇଲା ॥ ବିଦେହ ରାଜା ଜୀବ ହୋଇ । ନବ ଗ୍ରହଙ୍କ ଦୀକ୍ଷା ପାଇ ॥ କହିଲେ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଏକଚତ୍ୱାରିଂଶୋଽଧ୍ୟାୟଃ ।



## ଦ୍ୱିଚତ୍ୱାରିଂଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ମନର ହରଷେ । ପଡ଼େ ଗୋବିନ୍ଦ ପାଦତଳେ ।୧। ହେ ନାଥ କମଳାରମଣ । ଶରଣ ପଞ୍ଜର ତୋ ନାମ ॥ ଅବ୍ୟକ୍ତ ରୂପ ନିରାକାର । ଅନନ୍ତ ଶିରେ ତୋ ବିହାର ॥ କାଳ ଶରୀରୁ ଆତ୍ମା ଜାତ । ସେ ନୁହେ ବସ୍ତୁ ମାୟା ଗ୍ରସ୍ତ ॥ କାଳ ସ୍ୱଭାବ ଶିଷ୍ୟ ଭାବ । ଆତ୍ମାଟି କରୁଛେ ସମ୍ଭବ ॥ ଏକଥା କହ ନାଥ ମୋତେ । ନମଇଁ ତୋର ପାଦାଗ୍ରତେ । ୨ ।

ଓଙ୍କାର ବିନ୍ଦୁ ରୂପେଣ ସର୍ବସୃଷ୍ଟି ପ୍ରକାଶୟେତ୍ ।
ଅର୍ଦ୍ଧମାତ୍ରା ମହାକାଳ ଗ୍ରଥିତଂ ବିନ୍ଦୁ ରୂପକଂ ॥

ଶ୍ରୀଭଗବାନୁବାଚ—ଶୁଣ ଅର୍ଜୁନ ଅନ୍ୟଥା । ଯେତେ କ୍ଷେତ୍ରିବ ଭବବ୍ୟଥା ॥ ଅରୂପବ୍ରହ୍ମ ଯେ ବୋଲଇ । ବ୍ରହ୍ମାଣ୍ଡ ପୂରିଅଛୁ ତହିଁ ॥ ସେ ନୀଳବର୍ଣ୍ଣ ପ୍ରାୟ ଜ୍ୟୋତି । ସେଠାରୁ ବିନ୍ଦୁ ଯେ ଉତ୍ପତ୍ତି ।୯। ସେ ବିନ୍ଦୁ ଆତ୍ମା ଜୀବ ହୋଇ । ଅର୍ଦ୍ଧମାତ୍ରା ଉପରେ ରହି । ୧୦ । କାଳଟି ଅର୍ଦ୍ଧମାତ୍ରା ହୋଇ । ରଜୋବୀଜଟି ସେ ଅଟଇ ॥ ବିନ୍ଦୁଟି ଜୀବ ଆତ୍ମା ହୋଇ । କାୟା କଳ୍ପନା ଦେହ ପାଇ ।୧୨। ସେଜୀବ ଈଶ୍ୱର ବୋଲାଇ । ବ୍ରହ୍ମାଣ୍ଡ ଭୂଗୋଳ କହଇ । ୧୩ । କହିଲେ ବଳରାମ ଦାସ । ଈଶ୍ୱର ପାଦେ ମୋର ଆଶ । ୧୪ । ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଦ୍ୱିଚତ୍ୱାରିଂଶୋଽଧ୍ୟାୟଃ ।



## ତ୍ରିଚତ୍ୱାରିଂଶ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ଶିରେ ଦେଇ କର । ବୋଲଇ ଶୁଣ ଚକ୍ରଧର ।୧। ଜଳେ ପାଷାଣ ପ୍ରାୟେ ମଚ୍ଛେ । ଗଜ ବନ୍ଧନ ତେତେ ଗର୍ଜେ ॥ ଏ ପଦ ଅର୍ଥ କହ ଫେଡ଼ି । ବ୍ରହ୍ମାଣ୍ଡ ଭୂଗୋଳ ବୁଝାଇ ॥

ଶ୍ରୀ ଭଗବାନୁବାଚ

ଓଁ କାରଂ ସର୍ବ ବ୍ୟାପିତଂ ଯେନ ଭବେନ ଦୃଶ୍ୟତେ ।
ଓଁ ଭବେ ମାତୃଗର୍ଭେ ଚ; ରଜୋବୀର୍ଯ୍ୟ ସମଯୁକ୍ତକଂ ॥

ଶୁଣ ଅର୍ଜୁନ ମନଦେଇ । ବ୍ରହ୍ମାଣ୍ଡ ଭୂଗୋଳରେ କହି । ୪ । ମାତାର ରକ୍ତ ଜଳ ହୋଇ । ପିତା ବୀଜଟି ପାଷାଣହିଁ ।୫। ଗଜଟି ରଜଭାଗ ଜାଣ । ବୀଜ ଭାଗ ଚିଗଜପୂର୍ଣ୍ଣ ॥ ରଜ ଯେ ମାତା ଗର୍ଭେ ଥାଇ । ତହିଁ ପିତା ବୀଜ ପଡ଼ଇ । ୭ । ବୀଜକୁ ରଜ ବନ୍ଧୀ କଲା । ଏମନ୍ତେ ବନ୍ଧନେ ପଡ଼ିଲା ।୮। କହଇ ବଳରାମ ଦାସ । ବ୍ରହ୍ମାଣ୍ଡ

ଭୂଗୋଳ ପ୍ରକାଶ ।୯। ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ତ୍ରିଚତ୍ୱାରିଂଶୋଽଧ୍ୟାୟଃ ।

—o—

## ଚତୁଃଚତ୍ୱାରିଂଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ମନେ ମନେ ଗୁଣି । କହଇ ଶୁଣ ଚକ୍ରପାଣି ॥ ପୁଣ୍ୟ କରିବ ପୁଣ୍ୟକାଳେ । ନିଷେଧ ନ କରିବ ଭାଳେ ॥ ପୁଣ୍ୟକାଳଟି କେ ଅଟଇ । କେମନ୍ତେ ପୁଣ୍ୟ ସେ କରଇ । ଏ ଅର୍ଥ ଫେଡ଼ି ମୋତେ କହ । ମନରୁ ଫେଡ଼ ମୋ ସନ୍ଦେହ ॥ ଏମନ୍ତ ବାକ୍ୟ ଶୁଣି କର୍ଣ୍ଣେ । କହନ୍ତି କମଳ ଲୋଚନେ । ୫ । ଶ୍ରୀ ଭଗବାନୁବାଚ ଶୁଣ ଅର୍ଜ୍ଜୁନ ତୋଷ ମନେ । ତୋତେ କହିବା ଦିବ୍ୟଜ୍ଞାନେ । ମାତାର ପଦ୍ମ ଫୁଟିଥାଇ । ସେ ଦିନ ପୁଣ୍ୟକାଳ କହି ॥ ସେ ଦିନ ପିତା ବୀଜ ଦେବ । ଅନ୍ୟଦିନରେ ନ ଛୁଇଁବ ॥ ଏ ପରି ଅର୍ଥ ତତ୍ତ୍ୱସାର । ଶୁଣି ଅର୍ଜ୍ଜୁନ ମହାବୀର । ୯ । କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ୧୦ । ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଚତୁଃଚତ୍ୱାରିଂଶୋଽଧ୍ୟାୟଃ ।

---

## ପଞ୍ଚଚତ୍ୱାରିଂଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ-ଅର୍ଜ୍ଜୁନ ବେନିକର ଯୋଡ଼ି । କୃଷ୍ଣ ଚରଣ ତଳେ ପଡ଼ି । ୧ । ନାରଦ ମୁନି ଏକଦିନେ । ଗଲେ ବସୁଦେବ ଭୁବନେ ॥ ପଦ ପଖାଳେ ପାଦ ଧୋଇ । ଆସନେ ବସାଇଲେ ନେଇ ॥ ପଚାର କଲ କେଉଁ ପୁଣି । ଏ ବାକ୍ୟ କହ ଭଗବାନ । ୪ । ଶ୍ରୀ ଭଗବାନୁବାଚ—କହନ୍ତି କମଳ ଲୋଚନ । ଶୁଣି ଅର୍ଜ୍ଜୁନ ଦେଇ ମନ ॥ ନାରଦେ ବସୁଦେବ ଦେଖି । ମନଆନନ୍ଦେ ହୋଇ ସୁଖି ।

ଆନନ୍ଦ ମନେ ଗଦଗଦ । ବୋଲଇ ଶୁଣ ହେ ନାରଦ । କୃଷ୍ଣ ମହିମା ମୋତେ କହି । ମନ ମୋ ସନ୍ତୋଷ କରିଅ । ଏତେକ ବୋଲି ପାଦଧରି । ବେନିନୟନୁ ବହେ ବାରି । ନୟନୁ ନୀର ଯେ ବହଇ । ନାରଦ ପାଦେ ପଡ଼ି ଯାଇଁ ।୧୨। ପବନ ଜଳ ସେ ଅଟଇ । ବ୍ରହ୍ମାଣ୍ଡ ଭୂଗୋଳରେ କହି ॥ ଏ ପଦ ଅର୍ଥର ବିଚାର । କହିଲେ ପ୍ରଭୁ ଅର୍ଥସାର ॥ ଶ୍ରୀ ଭଗବାନୁବାଚ—ଚୈତନ୍ୟ ବସୁ ଦେବ କହି । ତାର ଭବନ ଜ୍ୟୋତି ହୋଇ ।୧୩। ନାରଦ ମନ ହେ ଅର୍ଜ୍ଜୁନ । ପବନ ଜଳ ରଜ ଜାଣ ॥ ମନରୁ ପବନ ଖସଇ । ପବନ ଜଳରେ ପଡ଼ଇ ।୧୪। ଏମନ୍ତ ଅର୍ଥର ସନ୍ଦେଶ । ଭଣିଲେ ବଳରାମ ଦାସ ।୧୫। ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନସମ୍ବାଦେ ନାମ ପଞ୍ଚଚତ୍ୱାରିଂଶୋଽଧ୍ୟାୟଃ ।

---

## ଷଟ୍‌ଚତ୍ୱାରିଂଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନପୁଣି ପଚାରଇ । ବିନୟ ଭାବେ ସେବି ହୃଦି ॥ କଥାଏ ମୋ ମନେ ପ୍ରବେଶ । କହିବା ହେଉ ଏସନ୍ଦେଶ କପୋତ କପୋତି ବାଳକ । ଘେନିଣ ଚଳିଲା ଲୁବ୍‌ଧକ ॥ ଶବର ଜାଲରେ ପଡ଼ିଲା । ଏକଥା ସଂଶୟ ଲାଗିଲା ॥ କପୋତକପୋତୀଙ୍କ ପୁଣି । ବାଳକ କେହୁ ତା ପ୍ରମାଣି ॥ ଶବର କେଉଁଠାରେ ଥିଲା । ଆହାର କେହୁ ବୋଲାଇଲା । ଜାଲ ବୋଲିଣି ଏ କେମନ୍ତ । ଗୁରୁ ଦଗଟି କେହୁ ତହିଁ ବୃକ୍ଷଯେ କେଉଁଠାରେ ଥିଲା । ବନକେମନ୍ତେ ବୋଲାଇଲା । ଏ ଅର୍ଥଫେଡ଼ିମୋତେକହ । ମନରୁ ଫେଡ଼ ମୋ ସନ୍ଦେହ ॥ ଶ୍ରୀଭଗବାନୁବାଚ—ଶୁଣଅର୍ଜ୍ଜୁନ ମନଦେଇ । ଉତ୍ତମ ଶିଷ୍ୟେ ଗୁରୁ କହି ॥ ବୃକ୍ଷ ବୋଲିଣି ଦେହ ଜାଣ ଜୀବ ପରମ ପକ୍ଷୀ ପୁଣ । ଜୀବଟି କପୋତୀହୋଇଲା । କପୋତପରମକହିଲା ।

ଏ ବୃକ୍ଷେବେନିପକ୍ଷୀଥାନ୍ତି । ଏକ ଅରେକବିହରନ୍ତି ॥ ପରମଶୂନ୍ୟ ଠାବ ବାସ । ସକଳଭାବେ ସେତ୍‌ଦାସ ॥ ନରଡେପକ୍ଷୀ ରୂପେଥାଇ ବାସନା ଭୋଗେ ଢୋଷହୋଇ ॥ ଗ୍ରମନାମଟି ଠାହାଙ୍କର । ସାକ୍ଷୀ ସ୍ୱରୂପେଡାବିହାର ॥ କପୋତିମାୟାଚରବିହରେ । ନାବଡେନାନା କର୍ମ କରେ ॥ ମତ୍ତଗବଂରେକର୍ମକଣ । ସ୍ତ୍ରିସ୍ ସଙ୍ଗମେ ନାଡ୍ୟେପଣ୍ଡ଼ ଏମନ୍ତେ ପ୍ରାଣୀଯାଇନାଶ । ଶୁଣଅର୍ଜୁନଜ୍ଞାନରସ । ପ୍ରଳୟକାଳରେ ଏକଥା । ଶୁଣିବାକୁଡୁ ସାମରଥା ।୨୪। କାଳଟି ଶବରକୁ କହ । ସନ୍ନି ପାଡଟିଜାଲ ହୋଇ ।୨୧। ବେନିବାଳକଚକ୍ଷୁପୁଣ । ଅହାର ଗ୍ରାସଟି ଜାଣ ॥ଏଦେହବନ ବୋଲିକହ୍ନାକର୍ଣ୍ଣନାସିକାଦଗହୋଇ ସନ୍ନିପାତଟି ଅକର୍ଷଇ । ଏମନ୍ତେ ପ୍ରଳୟହୁଅଇ ॥ ମୁଖନାସିକାଚକ୍ଷୁ କର୍ଣ୍ଣ । ଏ ଗୃହଦଗ ହୋଇଶୂନ୍ୟ ।୧୫। ଗ୍ରାଅ ଶବଦଟି ହଜାଇ । ଜୀବପରମ ଖୋଜିଗଲା ॥ ଶଅଁ ଚୈତନ୍ୟ ବେନିବାଳେ । ଏଣେ ପଡ଼ନ୍ତିପାଇଜାଲେ ॥ କପୋତକପୋତି ମିଳନ୍ତି । ଗୃହଦଗକୁ ସେ ଗମନ୍ତି ॥ ସମସ୍ତେ ବୃକ୍ଷ ଛାଡ଼ିଗଲେ । ଓଁ କାର ଶବ୍ଦେ ମିଳିଲେ ॥ ଶବର ଧେନି ଚଳିଗଲା । ନିଜ ଭୁବନରେ ଥୋଇଲା ॥ ଶୁଣି ଅର୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ ॥ ଇତି ଶ୍ରୀ ବ୍ରହ୍ମାଣ୍ଡଭୂଗୋଳ ବର୍ଣ୍ଣନେ ହରଅର୍ଜୁନ ସମ୍ବାଦେ ନାମ ଷଟ୍‌ଚତ୍ୱାରିଂଶୋଽଧ୍ୟାୟଃ ।

— ⁂ —

## ସପ୍ତଚତ୍ୱାରିଂଶ ଅଧ୍ୟାୟ

ଅର୍ଜୁନଉବାଚ –ଅର୍ଜୁନ ବୋଲଇ ଗୋସାଇଁ । ଅଛଇ ପାଦେକ ଅଛଇ ॥ କପୋତ ଡିମ୍ବ ବେ ଦଅଇ । ବେନି ବାଳକ ତହୁଁ ହୋଇ ॥ ଏକଡିମ୍ବରୁ ବେନିଛୁଅ । ଫେଡ଼ି କହିବ ଚଉବାହୁ ଶ୍ରୀ ଭଗବାନୁବାଚ –କହନ୍ତି ପ୍ରଭୁ ଦାଇତ୍ୟାରି । ଶୁଣ ଅର୍ଜୁନ

ହେତୁ କର । ନେତ୍ରରୁ ବିନ୍ଦୁ ଯେ ଖସିଲା । ମାତାର ପଦ୍ମରେ ପଡ଼ିଲା ॥ ସେ ରଜବୀର୍ଯ୍ୟ ଏକଠାରେ । ହୋଇଲା ଜନ୍ମ ଏପ୍ରକାରେ କେତେକଦିନ ତହୁଁ ଗଲା । ସେ ଜନ୍ମ ବେନି ଫାଳ ହେଲା ॥ ଜୀବ ପରମ ବେନି ହୋଇ । ବାଆ ଯେ ମା ଅଟି ବୋଲାଇ ॥ ଶରୀର ଜନ୍ମ ବୋଲାଇଲା । ବେନି ବାଳକ ଚକ୍ଷୁ ହେଲା ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡଭୂଗୋଳ ପ୍ରକାଶ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରିଅର୍ଜୁନ ସମ୍ବାଦେ ନାମ ସପ୍ତଚତ୍ୱାରିଂଶୋଽଧ୍ୟାୟଃ ।

— ❋

## ଅଷ୍ଟଚତ୍ୱାରିଂଶ ଅଧ୍ୟାୟ

ଅର୍ଜୁନଉବାଚ—ଅର୍ଜୁନ ବୋଲଇ ଗୋସାଇଁ । କଥାଏ ପଚାରିବି ମୁହିଁ ॥ ପରମବ୍ରହ୍ମ ନିରାକାର । ପୁରୁଷୋତ୍ତମ ଚକ୍ରଧର ॥ ହେ ଦୀନବନ୍ଧୁ ଦଇତ୍ୟାରି । ପଦ୍ମନୟନ ଗଦାଧାରୀ ॥ ହେ ନୀଳ-ଗିରି ନାରାୟଣ । ଭକ୍ତକୁ ଯାଚୁଥିବୁ ଶରଣ ॥ ବ୍ରହ୍ମାଣ୍ଡ ଭୂଗୋଳ ପୁଚ୍ଛଇ । ଅର୍ଜୁନ ପୁଣି ପଚାରଇ ॥ ପିଙ୍ଗଳା ପୂର୍ବଜନ୍ମ କାହିଁ । ମୋତେ କହିବା ଯଦୁରାଇ ॥ ତାର କି ପୂର୍ବଭାଗ୍ୟଥିଲା । ଶରୀରେ ଚୈତନ୍ୟ ଜନ୍ମିଲା ॥ ଏକଥା କହ ଦାମୋଦର । ପଦ୍ମନୟନ ଗଦାଧର ॥ ଶ୍ରୀ ଭଗବାନୁବାଚ କହନ୍ତି କମଳାର ବର । ଶୁଣ ଅର୍ଜୁନ ମହାବୀର ॥ ପୂର୍ବେ କମଠ ନୃପବର । ବନେ ଦେଖିଲା ଉପୀବର ॥ ମାତଙ୍ଗ ଋଷିଙ୍କ ବନରେ । ପ୍ରବେଶ ହୋଇ ଧାତ-କାରେ ॥ ମାତଙ୍ଗ ମହାଋଷି ପତ୍ନୀ । ସତୀରେ ଗଣିତା କାମିନୀ ॥ ରାଜା ବୋଇଲେ ଚଣ୍ଡେ ଗଲ । ଋଷି ଭାରିଯା ତୁମ୍ଭେ ହର ॥ ରାଜା ଅଙ୍କାରେ ଗଲେ ଚଣ୍ଡ । ଅତି ଦୁଷ୍ଟ ଯେ ସେ ପ୍ରଚଣ୍ଡ ॥ ଋଷିପତ୍ନୀଙ୍କୁ ସେ ହରିଲା । ଧର୍ମପଥକୁ ସେ ଛାଡ଼ିଲା ॥ ତହୁଁ ଯେ ଋଷି କୋଧ ହୋଇ । କୋପେ ବୋଇଲେ ରାଜା ତୁହି ॥ ଏ ଦୋଷେ ହେବୁ

ଡୋ ମରଣ । ଜନ୍ମ ତୁ ପିଙ୍ଗଳା ହୋଇଣ ॥ ଏମନ୍ତ ଋଷି ଶାପ ଦେଲ । ବୋଲେ କମଠ ନୃପମଣି ॥ କେମନ୍ତେ କାରଣ ପାଇବ । ବେଶ୍ୟା ଜନ୍ମରୁ ମୁଁ ତରିବ ॥ ଋଷି ବୋଇଲେ ରାଜପୁତ୍ର । ଆମ୍ଭର ବଚନ ଏ ସତ୍ୟ ॥ ବିଷ୍ଣୁ ଭକତ ତୁ ହୋଇବୁ । ଏ ଘୋରସଂସାରୁ ତରିବୁ ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରିଅର୍ଜ୍ଜୁନ ସମ୍ବାଦେ ନାମ ଅଷ୍ଟଚତ୍ୱାରିଂଶୋଽଧ୍ୟାୟଃ ।

— ❊ —

## ଊନପଞ୍ଚାଶତ୍ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବିନୟ ଭାବରେ । ପଡ଼ଇ କୃଷ୍ଣର ପୟରେ ॥ ହେ ନାରାୟଣ ଦୀନବନ୍ଧୁ । ଉଦ୍ଧର ତୋର ମାୟାସିନ୍ଧୁ ॥ ପରମାର୍ଥରେ ଯେ କହିଲ । ଶରୀର ଅର୍ଥ ଗୁପ୍ତକଲ ॥ ଶରୀରେ ପିଙ୍ଗଳା କେ କହ । ଠାକୁର କେଉଁଠା ଅଛେ ॥ ପଥେ ଯେ ଅଭଯାତ ହେଲ । ତାକୁ ନୟନେ କେ ଦେଖିଲା ॥ ଭୁଛି ପୁରୁଷ କେ ଅଛଇ । ପ୍ରାଣନାଥଟି କେ ବୋଲଇ ॥ ନିଜ ଦେହଟି କେଉଁ ପୁରୀ । ଦ୍ୱାରଟି କେ ଅଛଇ ଜାଣି ॥ ନିର୍ଣ୍ଣୟ କର ମୋତେ କହ । ମନରୁ ଫେଡ଼ ମୋ ସନ୍ଦେହ ॥ ଶ୍ରୀଭଗବାନୁବାଚ – କହନ୍ତି ଜଗତ ସୋଦର । ଶୁଣ ଅର୍ଜ୍ଜୁନ ତତ୍ତ୍ୱ ସାର । ଜୀବଟି ପିଙ୍ଗଳା ଅଛଇ । ଧନୀ ପୁରୁଷ ମନ କହି । ଯହୁଁ ହୋଇଲା ପ୍ରାନ୍ତକାଳ । ଶରୀରେ ଘୋଟିଲାକ କାଳ ॥ କାଳ ଘୋଟନ୍ତେ ଜୀବ ଗଲା । ଶରୀର ଶୂନ୍ୟ ଯେ ହୋଇଲା ॥ ଏ ଦେହୁଁ ଛାଡ଼ିଗଲେ ମନ । ପିଙ୍ଗଳା କରଇ ଭ୍ରମଣ ॥ ମଧ୍ୟ ଶବଦ [illegible] କହି । [illegible] ବେଢ଼ା ଦ୍ୱାର ହୋଇ ॥ ଗୃହ ବାହାରେ ପୁଣି [illegible] [illegible] କରଇ ଭ୍ରମ [illegible] ଯେ ଅକାଶ ଅଛଇ । ଶୂନ୍ୟ ଶବଦେ ଖୋଜୁଥାଇ ॥ ଚକ୍ଷୁ ପୁରୁଷ ଢାମ

ଅର୍ଥ । ଜ୍ୟୋତିପୁରୁଷ ପ୍ରାଣନାଥ ॥ ଅନେକ ବେଳପର୍ଯ୍ୟନ୍ତେ । ପିଙ୍ଗଳା ଗୃହେଁ ଥିଲ ପଥେ ॥ ଯହୁଁ ସେ ଧନୀ ନ ଅଇଲା । ପିଙ୍ଗଳା ମନେ ବିଚାରିଲା ॥ ବୋଲଇ ଅନ୍ୟ କାର୍ଯ୍ୟନାହିଁ । କୃଷ୍ଣ ଶରଣ ପିବ ମୁହିଁ ॥ ଏତେକ ହୃଦରେ ପାଞ୍ଚିଲା । ନୟନ ମେଳି ଅନାଇଲା ॥ ଦେଖିଲ ପରଂବ୍ରହ୍ମ ଜ୍ୟୋତି । ପଦ୍ମପାଦରେ କଲା ସ୍ତୁତି ॥ ଅହେ ସୁଜନ ଜନେ ଶୁଣ । ପିଙ୍ଗଳା ଦୀକ୍ଷାମନେଘେନ ॥ ଭଣିଲେ ବଳରାମ ଦାସ । ପିଙ୍ଗଳା ପାଦେ ମୋର ଆଶ ॥

ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରିଅର୍ଜ୍ଜୁନ ସମ୍ବାଦେ ନାମ ଊନପଞ୍ଚାଶତୋଽଧ୍ୟାୟଃ ।

— ❋ —

## ପଞ୍ଚାଶତ୍ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ବୋଲେ ଅର୍ଜ୍ଜୁନ ଶୁଣ ହରି । ସଂଶୟ ଅଛଇ ମୋହରି ॥ ଚବିଶ ଗୁରୁଙ୍କ ସମ୍ବାଦ । ଫେଡ଼ି କହିବ ତତ୍ତ୍ୱବୋଧ ॥ ମୀନ ପିଙ୍ଗଳା ବେଶ୍ୟାନାରୀ । କୁରୁର ବ୍ରାହ୍ମଣ କୁମାରୀ ॥ ହରିଣୀ ଊର୍ଣ୍ଣନାଭ ଭର । ଶରକାରକ ମଧୁକର ॥ ଯେ ଯେତେ କୀଟ ଯେ ସଂସାର । ଚବିଶ ଗୁରୁ ହେଲା ସାର ॥ କିମାୟା କରଣ କହିବା । ଯେବେ ଘେନିବ ମୋର ସେବା ॥ ଶ୍ରୀଭଗବାନୁବାଚ—ଶୁଣ ଅର୍ଜ୍ଜୁନ ମନଦେଇ । କହିବା ଭାଗବତ ଫେଇ । ବ୍ୟକ୍ତ ତୁ ନ କରିବୁ କାହିଁ । ମୋ ପାଦପଦ୍ମ ଥାଅଛୁଇ ॥ ଚବିଶଗୁରୁଙ୍କର ବାଣୀ । ତୋତେ କହିବା ପରମାଣି ॥ କୁରର ପକ୍ଷୀ ଯାହା କହି । ପବନ ବୋଲି ତାହାକୁହିଁ ।୧୦। ଜୀବ ଠି ବୀଜ ବୋଲିଜାଣି ଉଦ ଯେ ମାଂସ ପରମାଣ ।୧୧। ତାହାର ସ୍ୱାଦ ଲୋକେ ଜାଣି । ବନ୍ଦୀ କରନ୍ତି ଗୃହେ ଆଣି ।୧୨। ରଜରେ ବୀଜକୁ ଧୂଞ୍ଜାଇ । ପରମ

ପକ୍ଷୀ ଷଷ୍ଟ୍ ଯାଇ ।୧୪। ଅଜଗରଟି ଉବ ବନ୍ଧୁ । ପୁଣ୍ୟ କାଳରେ ସେ ଭକ୍ଷଇ ॥ ଅନ୍ୟ-ଦିନରେ ଥାଇ ଖେଳେ । ସବୁ ଦେଖଇ ସାକ୍ଷୀ ରୂପେ ।୧୫। ଇଡ଼ା ଯେ ଜିହ୍ବା ବୋଲାଇଲା । ସ୍ୱମ ନାମଟି ସେ ରଖିଲା ।୧୬। ଏମନ୍ତେ ସଞ୍ଚର ଅନେକ । କେବଳ ମଣେ ଅସ୍ୱା ସୁଖ ॥ ଏମନ୍ତେ ପ୍ରାଣ ଯାଇ ହତ । ତୋ ଆଗେ କହିଲି ନିଯୁତ ॥ ନାନା ପୁଷ୍ପରୁ ମଧୁଅଣି । ସଞ୍ଚଇ ନିଜ ପୁରେ ପୁଣି ।୧୭। ଏ ଅର୍ଥ ଶୁଣ ହେ ଅର୍ଜୁନ । ବ୍ୟକ୍ତ ନ କର ଗୁହ୍ୟ ପୁଣ ॥ ନିଜ ଗୃହଟି ପଦ୍ମ ହୋଇ । ପବନ ଫଣୀ ବୋଲି କହି । ପୁଷ୍ପ ଯେ ଚକ୍ଷୁ ବୋଲି ଜାଣ । ସେଠାରୁ ଧାରା ବକ୍ଷେ ପୁଣ ॥ ବନ୍ଦୁ କୁ ମଧୁ ବୋଲି କହି । ଶୁଣ ଅର୍ଜୁନ ମନଦେଇ ॥ ଅନେକ ଶ୍ରମେ ତା ସଞ୍ଚଇ । ନିଶିଦିବସେ ଦୁଃଖସହି ॥ ଆପଣେ ମଧୁପୁଷ୍ପ ନେଇ । ସଞ୍ଚଇ ଅତି ମୂଢ଼ ହୋଇ ॥ ଏଣୁଟି ପ୍ରାଣୀ ଯାଇ ହତ । ବନ୍ଧ ତାହାକୁ ପରାପତ ॥ ତବଣ ଗୃହୁ ଭାବ ଜାଣ । ମନଟି କରଇ ଭ୍ରମଣ ॥ ମନକୁ ଅସ୍ଥିର କରବ । ତବଣ ଗୁରୁଙ୍କୁ ପାଇବ । କହନ୍ତି ତ୍ରିଧ୍ଭ ଜଗନ୍ନାଥ । ଶୁଣ ହେ ଯୁଧିଷ୍ଠିର ଭ୍ରାତ ॥ ଶୁଣି ଅର୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ ॥

ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ପଞ୍ଚାଶତୋଧ୍ୟାୟଃ ।

---

## ଏକପଞ୍ଚାଶତ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ବୋଲଇ ଗୋସାଇଁ । କଥାଏ ମନେ ପଡ଼ିଲାଇଁ ॥ ଯେସନେ ଶରକ୍ଷତ ପଥେ । ଶର ବାନ୍ଧଇ ହେଠମାଥେ ତାର ନିକଟେ ରାଜା ଗଲା । କେବେହେଁ ତାହା ନ ଜାଣିଲା ॥ ଶର ପଥଟି କେ ହୋଇଲା । କେବଣ ରାଜା ପାଖେ ଗଲା ॥ ଏଅର୍ଥ ଫେଡ଼ି

ମୋତେ କହ । ମନରୁ ସଂଶୟ ଫିଟାଅ ।୫। ଶ୍ରୀଭଗବାନୁବାଚ—
ଶର ଯେ ପବନ ଅଟଇ । ମାତା ପିତାଙ୍କୁ ପଥକହୁ । ଅଜ୍ଞାନରେ
ବାନ୍ଧିଥିଲ । ଶୂନ୍ୟରେ ଚନ୍ଦ୍ର ଯେ ଖସିଲ । ଜୀବସଙ୍ଗରେ ମନ-
ଗଲ । କେବେହେଁ ତାହା ନ ଜାଣିଲ । ଶୁଣି ଅର୍ଜୁନ ହେଲେ
ତୋଷ । ଭଣିଲେ ବଳରାମ ଦାସ । ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ
ବର୍ଣ୍ଣନେ ହର ଅର୍ଜୁନ ସମ୍ବାଦେ ନାମ ଏକପଞ୍ଚାଶତୋଽଧ୍ୟାୟଃ ।



## ଦ୍ୱିପଞ୍ଚାଶତ୍ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ପୁଣି ପଚ୍ଛରଇ । କଥାଏ ମନେ
ପଡ଼ିଲଇଁ । କମଳ ମଧ୍ୟେ ଭୃଙ୍ଗ ଯେତେକ । ମତ୍ତ ହୋଇଣ ମଧୁ-
ପାନେ । ଲୋଭେ କେମନ୍ତେ ନ ଛାଡ଼ିଲେ । ମଣ୍ଡିୟରେ ବନ୍ଧନେ
ପଡ଼ିଲେ । ଏ ପଦ ଅର୍ଥ ଫେଡ଼ି କହ । ଶୁଣିଲେ ସ୍ଥିର ହେବ
ଦେହ । ଶ୍ରୀଭଗବାନୁବାଚ—ଅର୍ଜୁନ ବଚନେ ମୁରାରି । କହନ୍ତି
ଭୂଗୋଳ ବସ୍ତାରି ।୫। କମଳ ପୁଷ୍ପ ମଧୁ କହୁ । ଭୃଙ୍ଗ ଯେ ପବନ
ଅଟଇ । ରଜୋବୀଜଙ୍କ ମଧ୍ୟେଥିଲ । ମୁଦ୍ରିତ ହୋଇନ୍ତେ ବନ୍ଦହେଲ ।
ଶୁଣି ଅର୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ ।

ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହର ଅର୍ଜୁନ ସମ୍ବାଦେ
ନାମ ଦ୍ୱିପଞ୍ଚାଶତୋଽଧ୍ୟାୟଃ ।



## ୫ ପଞ୍ଚାଶତ୍ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ବୋଲଇ ଗୋସାଇଁ । କଥାଏମନେ
ପଡ଼ିଲଇଁ । ପୂର୍ବେ ସେ ଅବନ୍ତୀନଗରେ । କନ୍ୟାଏ ଥିଲ ବସ୍ତ୍ର
ଘରେ ।। ସେ କନ୍ୟାବାହୁଁ ଜାତହେଲ । ଏକଥା ସନ୍ଦେହଲାଗିଲ ।

ଶ୍ରୀ ଭଗବାନୁବାଚ—କହନ୍ତି ପ୍ରଭୁ ଭଗବାନ । ଶୁଣ ଅର୍ଜୁନ ଦିବ୍ୟ-ଜ୍ଞାନ ॥ ପୂର୍ବେ ଯେ ଦକ୍ଷପ୍ରଜାପତି । ତାର କୁମାରୀ ସ୍ୱାମୀ ସମତୀ ॥ ମାତା ପିତାଙ୍କ ନମାନିଲା । ନବଗ୍ରହଙ୍କୁ ସେ ବରିଲା । ତା ଶୁଣି ଦକ୍ଷପ୍ରଜାପତି । ଝିଅକୁ ଅଭିଶାପ ଦିଅନ୍ତି ॥ ଅବନ୍ତୀନଗରେ ଜନ୍ମିବୁ । ନବ ବ୍ରାହ୍ମଣଙ୍କୁ ବରିବୁ ॥ ଏହାଙ୍କ ସଙ୍ଗ ନ କରିବୁ । ଧ୍ୟାନରେ ଶ୍ରୀକୃଷ୍ଣ ପାଇବୁ ॥ ଏକଥା ପରମାର୍ଥେ ଭଣି । ଶରୀର ଅର୍ଥ ଶୁଣ ପୁଣି ବିଦେହ ନଗ୍ର ହେଲା ଦେହୀ । ବିପ୍ରଟି ପଞ୍ଚଭୂତେ ରହି ॥ ରଥ ଯେ ପିତା ତାର ହେଲା । ମଅଷ୍ଟି ମାତା ବୋଲାଇଲା ॥ ଶବଦ କନ୍ୟା ଯେ ଅଟଇ । ପ୍ରକୃତି ଧ୍ୟାନ ବୋଲି କହି ॥ ଅରୂପାନନ୍ଦଙ୍କୁ ଚିହ୍ନିଲା । ସେ କନ୍ୟା ବାୟୁରୁ ତରିଲା ॥ ଶୁଣି ଅର୍ଜୁନ କର ଯୋଡ଼ି । କହେ ଗୋବିନ୍ଦ ପାଦେ ପଡ଼ି ॥ ସେଲ ମଣ୍ଡଳ କେ ଅଟଇ । ଏକଥା କହ ଶ୍ରୀବତ୍ସାଙ୍ଗ ॥ ଅର୍ଜୁନ ବଚନେ ମୁରାରି । କହନ୍ତି ଭୂଗୋଳ ବିସ୍ତାରି ॥ ସେଲ ଯେ ମନ ବୋଲାଇଲା । ପବନ ମଣ୍ଡଳ ହୋଇଲା ॥ କଙ୍କଣ ଅଷ୍ଟପାଟି ଜାଣ । ମୁଖ ନାସିକା ଚକ୍ଷୁ କର୍ଣ୍ଣ ॥ ଏମନ୍ତେ ଅଷ୍ଟ ଯେ କଙ୍କଣ । ତୁ ତାହା ଗଣି କର ଧେନ ॥ ଯହୁଁ ସେ ଧ୍ୟାନରେ ବସିଲା । ଷଡ଼ କଙ୍କଣ ଫିଟାଇଲା ॥ ନାସିକା ରନ୍ଧ୍ରେ ଯେ କଙ୍କଣ । ରହିଲା ଏ ଦୁଇପ୍ରମାଣ ॥ ଭଣିଲେ ବଳରାମ ଦାସ । ବ୍ରହ୍ମାଣ୍ଡ-ଭୂଗୋଳ-ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ତ୍ରିପଞ୍ଚାଶତୋଽଧ୍ୟାୟଃ ।



## ଚତୁଃପଞ୍ଚାଶତ୍ ଅଧ୍ୟାୟ

ଅର୍ଜୁନ ଉବାଚ—ଅହେ ଗୋବିନ୍ଦ ପୀତବାସ । ଶରଣାଗତ ଜନ ଆଶ ॥ ସ୍ତ୍ରୀ ଶୂଦ୍ର ପତିତ ଗୃହସ୍ଥାନେ । ତରିଲେ ସାଧୁସଙ୍ଗ ମେଳେ ॥ ସ୍ତ୍ରୀ ଯେ କେମନ୍ତ ବୋଲାଇଲ । ପତିତ ଶୂଦ୍ରଙ୍କ

ହୋଇଲା ॥ କେବଣଠାରେ କାହିଁ ଥିଲେ । ଏହାକୁ କେମନ୍ତେ
ଜାଣିଲେ ॥ ଏକଥା କହ ଦାମୋଦର । ନମଇଁ ଚରଣେ ତୁମ୍ଭର ॥
ଶ୍ରୀ ଭଗବାନୁବାଚ—ଅର୍ଜୁନ ବଚନେ ମୁରାର । କହନ୍ତି ଭୂଗୋଳ
ବିସ୍ତାର ॥ ଶୁଣ ଅର୍ଜୁନ ଉତ୍ତରସ । ଯେଣେ ତୋହର ସ୍ଥାପନା ଏଁ
ନାରକା ବୋଲି ପ୍ରଭୁ ନାମ । ଯହିଁ କପିଳ ସାଧୁ ନାମ ॥ ସେ-
ସାଧୁ ନଗର ଉପାନ୍ତ । ସ୍ଥାପିଣ ଏକଇ ଅଶ୍ୱତ୍ଥ ॥ ନିତ୍ୟେ ସେ
ବୃକ୍ଷମୂଳେ ଥାନ୍ତି । ସୁଖେ ଗୋବିନ୍ଦ ନାମ ଗାନ୍ତି ॥ ଏକ ସ୍ତିଗ୍ରଏ
ଗ୍ରାମୁ ଯାଇ । ତଣ୍ଡୁଳ ସାଧୁଙ୍କୁ ସେ ଦେଇ ॥ ସାଧୁଙ୍କ ନୟନେ
ଦେଖଇ । କର୍ଣ୍ଣରେ ନାମ ଶୁଣୁଥାଇ ॥ ମଧୁଅ ନୀମେ
ଶୂଦ୍ର ଯାଇ । ସାଧୁଙ୍କ ନୟନେ ଦେଖଇ ॥ ପଣ୍ଡିତ ବୋଲି ଏକ
ଥିଲା । ପାପରେ ବେଶ୍ୟା ସେ ହୋଇଲା ॥ କାହିଁ ସେ ନ ପାରଇ
ଯାଇ । ସାଧୁଙ୍କ ସଙ୍ଗେ ପଡ଼ିଥାଇ ॥ ମୃଦୁ ଗୃଣ୍ଡାଳ ତହିଁ ଥିଲା ।
ବଶିଷ୍ଠଋଷି ଶାପ ଦେଲା ॥ ତେଣୁ ସେ ଗୃଣ୍ଡାଳ ହୁଅଇ । ମୃଗୟା
ବିନୋଦରେ ଯାଇ ॥ ଯୋଗେଣ ସାଧୁଙ୍କୁ ଯେ ଦେଖି । ଅନନ୍ଦ
ଭାବେ ହେଲା ସୁଖୀ ॥ ସକଳ ତେଜି ସେ ରହିଲା । ସାଧୁଙ୍କ
ଚରଣେ ଖଟିଲା ॥ କେତେହେଁ ଦିନ ତହିଁ ଗଲା । ସାଧୁଙ୍କ ପ୍ରାଣ
ତ୍ୟାଗ ହେଲା ॥ ମେନକା ଅପସରୀ ସୁତ । ନାମ ତାହାର ସୁଦ-
ନିତ ॥ ସାଧୁଙ୍କ ବଚନ ବୋଇଲା । ରଥ ଘେନିଣ ଚଳିଗଲା ॥
ସାଧୁ ବୋଇଲେ କଥାଶୁଣ । ଅମ୍ଭର ସଙ୍ଗେ ଗୃହଜଣ । ୨୪ ।
ଯେବେ ସେ ରଥରେ ବସିବେ । ଅମ୍ଭେ ବସିବୁ ଭଲେ ତେବେ ॥
ସ୍ୱଦେହ ଘେନି ସେ ଚଳିଲେ । ଅଦେହ ସାଧୁ ବୃକ୍ଷେ ବିଳେ ॥
ଯେ ପଞ୍ଚଜଣ ସଙ୍ଗେ ଯାଇ । କୃଷ୍ଣର ପାଦେ ଲୀନ ହୋଇ ॥
କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ୨୮ ।

ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରିଅର୍ଜୁନ ସମ୍ବାଦେ
ନାମ ଚତୁଃପଞ୍ଚାଶତୋଽଧ୍ୟାୟଃ ।

## ପଞ୍ଚପଞ୍ଚାଶତ୍ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଶୁଣି ଅର୍ଜ୍ଜୁନ ଯେ ଅନାଇ । ପୁଣି ଛତ୍ରପତିଙ୍କୁ ପୁଚ୍ଛଇ । ସ୍ତ୍ରୀ ଶୂଦ୍ର ପତିତ ଯେ ହୋଇ । ଦେହରେ କହ ଭିବଗ୍ରାହୀ । ଗୃଣ୍ଡାଳ ଯେ ପୁଣ ହୋଇଲା । ଶୂଦ୍ର ଯେ ଦେହେ ବୋଲାଇଲା । ଗୁପ୍ତ ନ କର ଫେଡ଼ି କହ । ମୋ ମନୁ ଫିଟାଅ ସନ୍ଦେହ । ୪ । ଶ୍ରୀ ଭଗବାନୁବାଚ—ଶୁଣି ଅର୍ଜ୍ଜୁନର ବଚନ । କହନ୍ତି ଦେବକୀ ନନ୍ଦନ । ଶୁଣ ଅର୍ଜ୍ଜୁନ ମନ ଦେଇ ମନୁଅ ଶୂଦ୍ର ନାସା କହି । ତଡ଼ିତ ବେଶ୍ୟା ଚକ୍ଷୁ କହି । ଶୂଦ୍ର ପତିତ ସେ ବୋଲାଇ । ମୂଣ୍ଡ ଗୃଣ୍ଡାଳ ବୋଲି କହି । ହୃଦୟ ଠୂଳରେ ସାଧୁ ନାମ । ସେ ସାଧୁ ଭଗବାନ କହି । ପରମ ବ୍ରହ୍ମ ସେ ଅଟଇ । ମହାଶୂନ୍ୟରେ ଲୀନ ହୋନ୍ତି । ଏହାକୁ ଭକ୍ତର ଧରନ୍ତି । କହଇ ବଳରାମ ଦାସ । ବ୍ରହ୍ମାଣ୍ଡ-ଭୂଗୋଳ ପ୍ରକାଶ ॥

ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରିଅର୍ଜ୍ଜୁନ ଅମ୍ବାଦେ ନାମ ପଞ୍ଚପଞ୍ଚାଶତୋଽଧ୍ୟାୟଃ ।



## ଷଟ୍‌ପଞ୍ଚାଶତ୍ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ପୁଣି ଅର୍ଜ୍ଜୁନ ପଚାରନ୍ତି । ହେ ନାଥ ଶୁଣ ଯଦୁପତି । ଏ ଷଡ଼ଚକ୍ର ଦେହପୁରେ । ଶବଦ ଦ୍ୱାଦଶ ପ୍ରକାରେ ॥ ଏ ଅର୍ଥ କହ ଭଗବାନ । ମୁଁ ତୁମ୍ଭ ଚରଣେ ଶରଣ । ଶ୍ରୀ ଭଗବାନୁବାଚ—ଅର୍ଜ୍ଜୁନ ବାକ୍ୟେ ଚକ୍ରଧର । କହନ୍ତି ଭୂଗୋଳ ବିସ୍ତାର । ଏଥିରେ ଦ୍ୱାଦଶ ଶବଦ । କହିବା ଶୁଣ ଚକ୍ରଭେଦ । ନାସାରେ ଶବଦ ଯେ ବୁଝ । ବେନି କର୍ଣ୍ଣରେ ବେନି ମଧ୍ୟ । ବେନି ଚକ୍ଷୁରେ ନିରଞ୍ଜନ । ତହିଁରେ ବେନି ଶବ୍ଦ ଧେନ ।

ମୂଖଠୈରେ ଶବ୍ଦୈଦେଖ ଯେବନଂ । ଶୁଦ୍ଧ୍ୟ ଶବଦର ପ୍ରମାଣ ॥ ଅର୍ଦ୍ଧଜିହ୍ୱା
ସଳଖେ ନାଦ । ଦଶ ଶବଦ ଅଟେ ଭେଦ ॥ ମୂଳ ଶୂନ୍ୟ ଶବ୍ଦ
ଶୁଭଇ । ସ୍ୱଧୃଙ୍କା ବ୍ରଅ ଶଦ୍ଧ ହୋଇ ॥ ଏହୁ ମୂଳ ହୋ ସେ ଶବଦ
ପଦ୍ମରେ ଭ୍ରମଇ ଯେ ନାଦ ॥ ସେ ପଦ୍ମ ଭିତରେ ରହଇ । ଏ
ଷଡ଼ଚକ୍ର ଭେଦ ବହୁ ॥ ଅର୍ଦ୍ଧ ଜିହ୍ୱା ସଳଖେ ବାଟ । ପଡ଼େ
ଶଳଗ୍ରୈପା କବାଟ ॥ ସେ ଦ୍ୱାରୁ ପବନ ବାହାରେ । ଦ୍ୱ.ଦଶ
ଦ୍ୱାରେ ସେ ବିହରେ ॥ ବନ୍ଧୁ ଶବ୍ଦାରେ ଭିନ୍ନ ବାଜେ । ଅନନ୍ତ
ଧ୍ୱନି ଶୂନ୍ୟେ ବାଜେ ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ-
ଭୂଗୋଳ ପ୍ରକାଶ ॥

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ
ନାମ ଷଟ୍‌ପଞ୍ଚାଶତୋଽଧ୍ୟାୟଃ ।

—*—

## ସପ୍ତପଞ୍ଚାଶତ୍ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ପୁଣି ଅର୍ଜ୍ଜୁନ ପଚାରଇ । ହେ ନାଥ
ସ୍ୱାମୀ ଭବଗ୍ରାହୀ । ଏ ତନପୁରେ ତୋ ବିଭୂତି । କେଉଁ ସ୍ଥଳରେ
ତୋର ସ୍ଥିତି ॥ ଏ ବାକ୍ୟ କହ ଦାମୋଦର । ନମଇଁ ଚରଣେ
ତୁମ୍ଭର ॥ ଶ୍ରୀ ଭଗବାନୁବାଚ—ଶୁଣ ଅର୍ଜ୍ଜୁନ ମନଦେଇ । ଏ
ଜ୍ଞାନ ତୋତେ ମୁଁ ବୁଝାଇ ॥ କଣ୍ଠକୁ ଶିଖା ଯାଏ । ସ୍ୱର୍ଗ
ବୋଲିଣ ବେଦ କହେ ॥ କଣ୍ଠରୁ କଟି ଯାଏ ହୋଇ । ମର୍ତ୍ତ୍ୟ
ବୋଲିଣ ବେଦ କହଇ ॥ କଟିରୁ ପାଦ ଯାଏ ଶୁଣ । ପାତାଳବୋଲି
ହୋ ଅର୍ଜ୍ଜୁନ ॥ ଶୁଣ ତୁ ଦେହର ବିଚାର । ଯେଣୁ ତୋହର
କାୟା ସ୍ଥିର ॥ ପାତାଳ ବରୁଣ ନଗର । ସମସ୍ତ ନାଗଙ୍କର ଘର ॥
ମର୍ତ୍ତ୍ୟରେ ଯେମନ୍ତ ବ୍ୟବସ୍ଥା । ଶୁଣ ପାଣ୍ଡବ ମହାରଥା ॥ ଗୁହ୍ୟରେ
ଗଣେଶ ଯେ ବହୁ । ଅପୂର୍ବ ଗୃହ ସେହୁଠାରେଁ ॥ ଲିଙ୍ଗ ଚକ୍ରରେ

ଷଡ଼ାକ୍ଷର । ତହିଁରେ କାମେଶ୍ୱର ଘର ॥ କାମାକ୍ଷୀ ପକ୍ଷୀ ସେହିଠାବର । ବସି ଯେ ଅଛି ସେ ସ୍ଥାନରେ । ଦଶ ଅକ୍ଷର ନାଭି କହି । ବ୍ରହ୍ମା ନଗର ସେ ଅଟଇ । ଶୁଣ ତୁ ହୃଦର ବଗୃର । ବସେ ତହିଁ ଦ୍ୱାଦଶାକ୍ଷର । ଆପଣେ ପ୍ରଭୁ ଦାମୋଦର । ଲକ୍ଷ୍ମୀଙ୍କି ଘେନିଣ କୋଳର । କଣ୍ଠରେ ଈଶ୍ୱର ରହଇ । ପାଞ୍ଚଟି ଘେନି ବହରଇ ॥ ତହିଁ ଷୋଡ଼ଶାକ୍ଷର ରହେ । ବେନି ଦଳଟି ଅକାଶଏ ॥ ଚନ୍ଦ୍ର ସୂର୍ଯ୍ୟର ଏ ନଗର । ହଂସ ଭଜୁଛି ବେନାକ୍ଷର । ତହିଁ ଉପରେ ଅର୍ଦ୍ଧ ମାତ୍ରା । ମାତ୍ରା ଉପରେ ଠୂଳ ଚିତା । ଠୂଳ ଉପରେ ଶୂନ୍ୟ ରହି । ଶୂନ୍ୟ ଉପରେ ଭାବଗ୍ରାହୀ । ସେଠାରେ ଜଗତ ଗୋସାଇଁ । ଅଷ୍ଟଦଳଟି ଯହିଁ ରହି । ତହିଁ ଭିତରେ ଲୀଳା ମୋର । ଶୁଣ ହୋ ପାଣ୍ଡୁର କୁମର । ଏମନ୍ତେ ଅଟଇ ଅଶେଷ । ମୋର ବହୁତ ଲୀଳା ଶେଷ । କହଇ ବଳରାମ ଦାସ । ସେ ବ୍ରହ୍ମପାଦେ ମୋର ଆଶ । ୨୫ ।

ଇତି ଶ୍ରୀ ବ୍ରାହ୍ମଣ୍ଡଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନସମ୍ବାଦେ ନାମ ସପ୍ତପଞ୍ଚାଶତୋଽଧ୍ୟାୟଃ ।

---

## ଅଷ୍ଟପଞ୍ଚାଶତ୍ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ପୁଣି ପଚାରଇ । ହେ ନାଥ ଯଦୁ କୁଳସାଇଁ । ଅରିଭଞ୍ଜନ ଅଚ୍ୟୁତ । ତୁ ନାଥ ପ୍ରାଣ ପଞ୍ଚଭୂତ । ଭୂମିରସଟି କେ ବୋଲାଇ । କେମନ୍ତେ ଆକାଶ ସର୍ଜିଇ । ରସଙ୍କ ମଧ୍ୟେ ଭୂମିରସ । କେମନ୍ତେ ସର୍ଜିଇ ଆକାଶ । ଏ ବାକ୍ୟ କହ ଦାମୋଦର । ପୁରାଣ ପୁରୁଷ ଈଶ୍ୱର । ୧ । ଶ୍ରୀ ଭଗବାନୁବାଚ-ଅର୍ଜ୍ଜୁନ ବାକ୍ୟେ ଯଦୁବଂଶୀ । କହନ୍ତି ଅର୍ଜ୍ଜୁନକୁ ହସି ।

ହେମାକାଶଂ ମହାକାଶଂ ଠୂଳଶୂନ୍ୟ ଚ ସଗ୍ରହଃ ।
ନବନ୍ଦ୍ୱୟା ମମ ବ୍ରହ୍ମ ବ୍ୟାପିତଂ ସଚରାଚରଂ ॥

ଅର୍ଜୁନ ଶୁଣ ତୁ ସନ୍ଦେଶ । କହିବା ତୋତେ ଭୂମିରସ ॥ ସପ୍ତ ସାଗର ପରେ ହର । ଠୂଳ ଶୂନ୍ୟରେ ରସ ପୂର ॥ ଭୂମି ରସଟି ଜଳ କହି । ଅଦତ୍ୟ ଅଷ୍ଟମାସ ଯାଇ ॥ ତାହାର ଚତୁ ସମ୍ମୁଖରେ ଜଳ ଛାଡ଼ଇ ଏ ସଂସାରେ ॥ ସେ ଜଳେ ଜଗତଶୀତଳ । କୃଷକେ କୃଷି କରି ଠୂଳ ॥ ଏଣୁକି ଜଳ ଭୂମିରସ । ଶୁଣ ସୁମନେ ପାଣ୍ଡୁ-ଶିଷ୍ୟ ॥୧୨॥ ଦେହକୁ ଭୂମି ବୋଲି କହି । ଜୀବଟି ଭୂମିରସ କହି ॥ ଅନ୍ତରେ ଶୁଣ ତୁ ସନ୍ଦେଶ । କୃଷ୍ଣର ନାମ ଭୂମିରସ ॥ ମାତାଗର୍ଭରେ ଯେବେ ଥିଲି । ଭୂମି ରସଟି ଖାଉଥିଲି ॥ କହଇ ବଳରାମ ଦାସ । ଭୂମି ରସରେ ମୋର ଅଂଶ ॥

ଇତି ଶ୍ରୀ ବ୍ରହ୍ମାଣ୍ଡଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଅଷ୍ଟପଞ୍ଚାଶତୋଽଧ୍ୟାୟଃ ।

—*—

## ଊନଷଷ୍ଟିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅରତ ଭଞ୍ଜନ କେଶବ । କହ ହେ ଭକତ ପ୍ରସ୍ତାବ ॥ ଅଚେହ ଗୋବିନ୍ଦ ଦାମୋଦର । ପଦ୍ମନୟନ ଗଦାଧର ॥ କୀଟ ପତଙ୍ଗ ଖଗ ମୃଗ । ସତ୍ସଙ୍ଗେ ହେଲେ ମୋକ୍ଷଯୋଗ ॥ କୀଟ ପତଙ୍ଗ କେ ହୋଇଲି । ଖଗ ମୃଗଟି କାହିଁ ଥିଲି ॥ କେଉଁ ସ୍ଥାନ-ରେ ସାଧୁଥିଲେ । ଏହାଙ୍କୁ କେମନ୍ତେ ତାରିଲେ ॥ ଏ ଅର୍ଥ କହ ଭଗବାନ । ନମସ୍ତେ ଅରତଭଞ୍ଜନ ॥ ଶ୍ରୀ ଭଗବାନୁବାଚ— ଅର୍ଜୁନ ବାକ୍ୟେ ଜନାର୍ଦ୍ଦନ । କହନ୍ତି ଭୂଗୋଳ ବିଧାନ ॥ ଏବେ କହିବି ମୁହିଁ ତୋତେ । ଶୁଣ ତୁ ସାବଧାନ ଚିତ୍ତେ ॥ କୀଟ ଯେ ନୟନେ ବସଇ । ପତଙ୍ଗବୋଲି ମୁଖ କହି ॥ ଖଗ ଯେ ନାସିକା

ପ୍ରମାଣ । ମୃତ ଯେ ଅଛଇଁଟି କଣ୍ଠ ॥ ସାଧୁ ପୁରୁଷ ଯେ ବୋଲଇ । ପୁଣି ଅର୍ଜୁନ ଦେବା ଭଦ୍ର ॥ ସେ ଜ୍ୟୋତିବ୍ରହ୍ମ ସାଧୁ ଜାଣେ । ଏହାଙ୍କୁ କରନ୍ତି କାରଣ ॥ ପ୍ରଳୟ ଯେତେଁଦନ ହୋନ୍ତି । ଏ ସର୍ବ ଜ୍ୟୋତରେ ମିଶନ୍ତି ॥ ଏହାଙ୍କ କହ ସେ୍ରାର୍ଥ । ଏବେ କହିବା ବାହ୍ୟମତ ॥ ନାମବ୍ରହ୍ମଟି ସାଧୁ କହ । ସେ ନାମ ଭଜ ସାଧୁ ପାଇ ॥ ବୃକ୍ଷ ପାଷାଣ ତରୁ ତୃଣ । ଯୁଣନ୍ତେ ହୁଅନ୍ତି କାରଣ ॥ ଶୁଣି ଅର୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ ॥

ଇତି ଶ୍ରୀ ବ୍ରହ୍ମାଣ୍ଡଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଚ୍ଚନଷଷ୍ଟିତମୋଽଧ୍ୟାୟଃ ।



## ଷଷ୍ଟିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ପୁଣି ପଚରିଲା । ସଂଶୟ ମନରେ ରହିଲା ॥ ଅର୍ଜୁନ ପଚାରଇ ଭେଦ । ଉଦ୍ଧବେ ଦେଲେ ରତ୍ନପାଦ ॥ ରତ୍ନପାଦୁକାର ଯେ ଅର୍ଥ । ମୋତେ କହିବା ଜଗନ୍ନାଥ ॥ ତେବେ ଏ ସଂସାରୁ ତରିବି । ଏକାନ୍ତେ କୃଷ୍ଣଙ୍କ ଲଭିବି ॥ ତାର ହୃଦୟ-କଥା ହରି । ଜାଣିଲେ ମୁକୁନ୍ଦ ମୁରାରି ।୫। ଶ୍ରୀ ଭଗବାନୁବାଚ—

ପାଦପଦ୍ମ ମୁଖପଦ୍ମ ଚକ୍ଷୁ ପଦ୍ମାଞ୍ଚ ସଂସ୍ଥିତା ।
ହୃଦପଦ୍ମଞ୍ଚ କର୍ଣ୍ଣଂ ତୁ ଷଡ୍‌ପଦ୍ମ ସୁପ୍ରକାଶିତାଂ ।

ଶୁଣ ଅର୍ଜୁନ ମନଦେଇ । ଗୁପତ କଥା ତୋତେ କହି ॥ ତୁ ଯେତେଁ କଥା ପଚାରିଲୁ । ସଂଶୟ କଥା ଯେ ଜାଣିଲୁ ॥ ସେ କଥା ଶୁଣ ମନସ୍ଥିରେ । କହିବା ଯୁଗାନ୍ତ ବିସ୍ତାରେ ॥ ଉଦ୍ଧବ ପଛେ ଚଳିଯାନ୍ତେ । ଦେହକୁ ପାଇଲା ସେ ପଥେ ॥ ଦେହକୁ ଧରିଥିଲା ଯଡ଼ । ତମ୍ଭା ଧାଅନ୍ତେ ଦେହ ଛାଡ଼ ॥ ତମ୍ଭାକୁ ଧରିଥିଲା ସଙ୍ଗେ ।

ରୌପ୍ୟ ପାଇଲ ଯାଇ ବେଗେ । ପୁଣ ସେ ରୌପ୍ୟ ଥିଲ ଧରି । ସୁବର୍ଣ୍ଣ ପାଇ ଦୁର କରି ॥ ସୁବର୍ଣ୍ଣ ପାଇ ନେଉଥିଲ । ହୀରା ପାଅନ୍ତେ ଛାଡ଼ିଦେଲ । ହୀରାକୁ ବାଟେ ଛାଡ଼ିଗଲ । ପରେଶ ପ୍ରସ୍ତର ପାଇଲ । ପରଶ ପରମର ପାଦ । ଶୂନ୍ୟ ଶବଦ ଜ୍ୟୋତିର୍ଭେଦ । ରାଅ ଶବଦକୁ ଧଇଲ । ଗ୍ରୀଷ୍ମ ବରଷା ସେ ବଞ୍ଚିଲ । ବନ୍ଦ ଯେ ସୁବର୍ଣ୍ଣକୁ କହି । ସୁବର୍ଣ୍ଣ ଶୂନ୍ୟ ପାଦ ହୋଇ । ରାଅଛି ମଥାକୁ ଟେଭିଠିଇ ॥ ମହାନିରାକାରେ ମଜଇ । ଉଦ୍ଧବ ଯେଉଁ ପାଦନେଲ । ସେ ପାଦ ଶତ୍ରେ ଦୋ ବହିଲ । କହଇ ବଳରାମ ଦାସ । ବ୍ରହ୍ମାଣ୍ଡଭୂଗୋଳ ପ୍ରକାଶ ॥ ୨୦ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଷଷ୍ଟିତମୋଽଧ୍ୟାୟଃ ।

—※—

## ଏକଷଷ୍ଟିତମ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବୋଲଇ ଗୋସାଇଁ । ଆହୁରି କଥାଏ ପୃଚ୍ଛଇ । ସାର ଉଦ୍ଧର ଦାମୋଦର । ଉଦ୍ଧବେ ଦେଲେ ସୁଧାଧାର । ଏ ଅର୍ଥ କହ ମୋତେ ଫେଇ । ନମସ୍ତେ ପ୍ରଭୁ ଭବ-ଗ୍ରାହୀ । ଶ୍ରୀ ଭଗବାନୁବାଚ—କହନ୍ତି ଭୂଗୋଳ ବିସ୍ତାର । ଅର୍ଜ୍ଜୁନ ବାକ୍ୟେ ଚକ୍ରଧର । ଶୁଣ ହୋ ପାର୍ଥ ମନ ଦେଇ । ମୋ ପାଦପଦ୍ମ ଦେବା କହି । ମୋ ପାଦପଦ୍ମ କ୍ଷୟ ହୋଇ । ତହିଁରେ ଷଡ଼ପଦ୍ମ ରହି । ସେ ପାଦପଦ୍ମ ବିନ୍ଦୁ କହି । ସେ ବିନ୍ଦୁ ଅମୃତ କ୍ଷରଇ । ସେ ମକରନ୍ଦ ସୁଧାଧାର । ଉଦ୍ଧବେ ପିଇଲେ ନିକର ।

ଯଃ ପଦ୍ମ ମକରନ୍ଦସ୍ୟ ଷଡ଼୍ ଚକ୍ର ସୁପ୍ରକାଶିତଃ ।
କ୍ଷୁଧାତୃଷା ଭୟଂ ନାସ୍ତି ମମ ନାମ ପ୍ରକାଶିତଃ ॥

ସେ ପଦ୍ମସାର ଧାର ବହ । ସେ ମକରନ୍ଦ ଧାର କହ ॥ ପଦ୍ମେ-ରେ ପାଦ ଯୁକ୍ତ ହୋଇ । ଏଣୁଟି କୃଷ୍ଣ ପାଦ କହ ॥ ଶୁଣ ଅର୍ଜୁନ ଜ୍ଞାନ ସାର । ଏ ଷଷ୍ଠ ପଦ୍ମର ବାର୍ତ୍ତାର ॥ ବାଳ ମୁକୁନ୍ଦ ରୂପେ ହର । ସେ ମକରନ୍ଦ ପାନ କର ॥ ପ୍ରତାପୀ ବୀର ଶୁଣି ତୋଷ । ଭଣିଲେ ବଳରାମ ଦାସ ॥

ଇତି ଶ୍ରୀ ବ୍ରହ୍ମାଣ୍ଡଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଏକଷଷ୍ଟିତମୋଽଧ୍ୟାୟଃ ।

—:*:—

## ଦ୍ୱିଷଷ୍ଟିତମ ଅଧ୍ୟାୟ

ଅର୍ଜୁନ ଉବାଚ – ଅର୍ଜୁନ ଶିରେ ଦେଇ କର । ବୋଲଇ ଶୁଣ ଦାମୋଦର ॥ ଅଜ୍ଞାନ ମୋହେ ମୁଁ ପଡ଼ିଲି । ତୋ ପଦ୍ମପାଦ ପାଶୋରିଲି ॥ ତୋହର ନାମ ନାବେ ବସି । ତରିବ ଘୋର କଳିରାଶି ॥ ଅଜାତ ପକ୍ଷୀର ଚରିତ । କହ ହେ କମଳାର କାନ୍ତ ॥ ଅଜାତ ପକ୍ଷୀ କାହିଁଥିଲା । ସେ ପୁଣି ମାତାକୁ ଡାକିଲା ॥ ତାହାର ମାତା ପିତା କାହିଁ । ତାର ଆହାର କେଉଁଠାଇଁ ॥ ଏ କଥା କହ ପଦ୍ମନାଭ । ତୋର ଚରଣେ ବଡ଼ ଲୋଭ ।

ଶ୍ରୀ ଭଗବାନୁବାଚ – ଅର୍ଜୁନ ବଚନେ ମାଧବ । କହନ୍ତି ଭୂଗୋଳ ପ୍ରସ୍ତାବ ॥

ପରମା ମାତୃକା ରାଧା ରାଧାୟାଂ ପ୍ରକୃତ ସ୍ଥିତା ।
ବ୍ରହ୍ମାଣ୍ଡ କୋଟି ମଣ୍ଡଳାଞ୍ଚ ରାଧା ଅଙ୍ଗ ପ୍ରକାଶିତା ॥

ଶୁଣ ଅର୍ଜୁନ ମନଦେଇ । ଗୁପତ ଜ୍ଞାନ ଏ ଅଟଇ ॥ ଅଜାତ ଶୂନ୍ୟେ ଜାତ ହୋଇ । ଶୂନ୍ୟରେ ଡିମ୍ବକେ ପାରଇ ॥ ଡିମ୍ବ ପାରଣ ମାତା ଗଲା । ରାଧା ଲୀଳାରେ ଗୁପ୍ତ ହେଲା ॥ ମାତା ପିତାଙ୍କୁ ସେ ନ ଦେଖି । ଶୂନ୍ୟରେ ରାଧା ନାମ ଡାକି ॥ ରାଧା ତାହାର ମାତା

ହୋଇ । ମଅଛି ବୋଲି ତାକୁ କହ ॥ ନୀଳଜୀମୂତ ଦେହ ତାର ନାତ୍ୟନନ୍ଦରେ ତାର ଘର ॥ ସଖୀ ତାହାର କେହି ନାହିଁ । ସଖୀ ତା ପଞ୍ଚଭୂତ ହୋଇ ॥ ଏମନ୍ତ ମହିମା ଯାହାର । ଶୁଣ ଅର୍ଜୁନ ମହାବୀର ॥ ସ୍ଥୂଳ ଗୁଡ଼ ସେ ମଅରେ ମିଶେ । ମଅଛି ମିଶାଇ ଅକାଶେ ॥ ପଞ୍ଚଭୂତରେ ଜନ୍ମ ହୋଇ । ପଞ୍ଚଭୂତରେ ଶୂନ୍ୟେ ଯାଇ ॥ ଅଜାତ ପକ୍ଷୀ ଜୀବହୋଇ । ତାହାର ଜନ୍ମ ମୃତ୍ୟୁ ନାହିଁ ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡଭୂଗୋଳ ପ୍ରକାଶ । ୨୦ । ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଦ୍ଵିଷଷ୍ଟିତମୋଽଧ୍ୟାୟଃ ।

—※—

## ତ୍ରିଷଷ୍ଟିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ବୋଲଇ ଗୋସାଇଁ । କଥାଏ ପଚ୍ଛରଇଁ ମୁହିଁ ॥ ପୂର୍ବେ ଯେ କପିଳ ନଗରେ । କନ୍ୟାଏ ସୁବର୍ଣ୍ଣ ଆକାରେ ॥ ସେ କନ୍ୟା ବିଧବା ହୋଇଲା । ତା ପତି ବସି ଶୋକ କଲା ॥ ଏ କଥା କହ ନାଥ ମୋତେ । ସଂଶୟ ଫେଡ଼ ମୋର ଚିତ୍ତେ ॥

ଶ୍ରୀ ଭଗବାନୁବାଚ

ବ୍ରହ୍ମବନ୍ଧୁ ଶିବମେକଞ୍ଚ ତ୍ରିଅଞ୍ଚ ଯେନ ସମ୍ଭବ ।
ଅଦଣକ୍ର ଭୟଂ ନାସ୍ତି ପାର୍ବତୀପତି ଈଶ୍ୱର ॥

ଶୁଣ ଅର୍ଜୁନ ହେତୁ ଦେଇ । କହିବା ଭୂଗୋଳକୁ ଫେଇ ॥ ପ୍ରଥମେ ବ୍ରହ୍ମା ବିଷ୍ଣୁ ଶିବ । ନିରାକାର ରୂପେ ସମ୍ଭବ ॥ ପ୍ରଥମେ ଜଳଧି ମନ୍ଥିଲେ । ସେଠାରୁ ବିଷ ଜାତ ହେଲେ ॥ ଶିବ ଭକ୍ଷିଣ ମୋହିଗଲେ । ତା ଦେଖି ପାର୍ବତୀ କାନ୍ଦିଲେ ॥ କାନ୍ଦଣି କଙ୍କଣ କାଢ଼ିଲେ । ବିଧବା ଅବସ୍ଥା ହୋଇଲେ ॥ ତଯେଣେ ଶିବ ଚେତା ପାଇ । ସ୍ୱେଦନ କଲେ ଦେବ ସାଇଁ ॥ ଏ ପରମାର୍ଥର ବିସ୍ତର ।

କହିବା ଶବ୍ଦାର୍ଥ ସାର ॥ କପିଳ ନଗ୍ର ଦେହ ଜାଣ । କଳ୍ପନା କନ୍ୟାଟି ପ୍ରମାଣ ॥ ଯହୁଁ ପ୍ରଳୟ କାଳହେଲା । ଜୀବ ଶବ୍ଦରୁ ଛାଡ଼ିଗଲା ॥ ଛାଡ଼ନ୍ତେ ଏ ଜୀବ ଚରମ । ଦେହ ହୋଇଲା ସର୍ବ ଶୂନ୍ୟ ॥ ଜୀବ ଯେ ଛାଡ଼ିଲା ତକ୍ଷଣି । ପରମ କରଇ ବେଦନ ॥ କଳ୍ପନା ଚକ୍ଷୁରେ ଯେ ଥିଲା । କେତେକ ଧାର ସେ ବହିଲା ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହର ଅର୍ଜ୍ଜୁନ ସମ୍ବାଦେ ନାମ ତ୍ରିଷଷ୍ଟିତମୋଽଧ୍ୟାୟଃ ।

---

## ଚତୁଃଷଷ୍ଟିତମ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବୋଲଇ ବଚନ । ଶୁଣ ହେ ପ୍ରଭୁ ଭଗବାନ । ଶ୍ରୀ ଭାଗବତ ସ୍କନ୍ଧ ହେଲା । ମହା ପୁରାଣ ବୋଲାଇଲା ॥ ଏ ଅର୍ଥ ଫେଡ଼ି ମୋତେ କହ । ମନରୁ ଫେଡ଼ ମୋ ସଂଶୟ ॥ ଶ୍ରୀଭଗବାନୁବାଚ—ଶୁଣ ଅର୍ଜ୍ଜୁନ ତୋଷହୋଇ ॥ ତୋତେ ମୁଁ ଦେଉଅଛି କହି ॥ ମାତାର ପଦ ଗୋଟି ଥିଲା । ତହିଁରେ ବାନ୍ଧି ପୂରାଇଲା ॥ ମହା ପୁରାଣ ତହିଁ ହୋଇ । ବ୍ରହ୍ମାଣ୍ଡ-ଭୂଗୋଳରେ କହି ॥ ଭଣଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହର ଅର୍ଜ୍ଜୁନ ସମ୍ବାଦେ ନାମ ଚତୁଃଷଷ୍ଟିତମୋଽଧ୍ୟାୟଃ ।

—*—

## ପଞ୍ଚଷଷ୍ଟିତମ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ –ଅର୍ଜ୍ଜୁନ ବୋଲେ ଭଗବାନ । ମୁଁ ତୁମ୍ଭ ଚରଣେ ଶରଣ ॥ କୌସ୍ତୁଭମଣି କେମନ୍ତେ ହେଲା । କହିବେ

ବାହୁଁ ଅଣିଦେଲ ॥ ଶ୍ରୀ ଭଗବାନୁବାଚ – ଅର୍ଜୁନ ବାକ୍ୟେ ଚିତ୍ତଧର । କହନ୍ତି ଭୂଗୋଳ ବିସ୍ତାର ॥ ଉଦ୍ଧବ ଏକଦିନକରେ । ବନେ ପଶିଲ ମୃଗୟାରେ ॥ ବୁଲଇ ଚହନ କାନନ । ପଡ଼ିଛି କୌସ୍ତୁଭ ରତନ ॥ କଣ୍ଠଠାରୁ ତାହାର ନାହିଁ । ମୁଣ୍ଡ ତା ରାମ ନାମ ଗାଇ ॥ ଉଦ୍ଧବ ମୃଗପ୍ରାୟ ମଣି । ବାଣ ବିନ୍ଧିଲ ଗୁଣଟାଣି ॥ ସେ ବାଣ ବେଗେ ଚାଲିଗଲ । ପଡ଼ିଛି ମୁଣ୍ଡକୁ ଦେଖିଲ ॥ ତକ୍ଷଣେ ବାହୁଡ଼ିଲବାଣ । କହେ ଉଦ୍ଧବକୁ ବଚନ ॥ ମୃଗ ଶୂକର ନୁହେଁ କିଛି । ମୁଣ୍ଡ ଗୋଟିଏ ପଡ଼ିଅଛି ॥ ରାମନାମ ସେ ମୁଣ୍ଡ ଡାକ ॥ ଉଦ୍ଧବ ମୁଣ୍ଡକୁ ନିରେଖି ॥ ତକ୍ଷଣେ ମୁଣ୍ଡକୁ ଧଇଲ । ସୁବର୍ଣ୍ଣ-ସୂତ୍ରରେ ଗୁନ୍ଥିଲ ॥ ସେ ମୁଣ୍ଡ କଉସ୍ତୁଭ ମଣି । ଅମ୍ଭ ଗଳାରେ ଲମ୍ବେ ପୁଣି । ସେ ମନିଥିଲେ କ୍ଷୁଧା ତୃଷା । ନାହିଁକାର ଭବନେ ବସା ॥ ମଣି ଦର୍ଶନେ ମୋର ଆଶ । ଭଣିଲେ ବଳରାମ ଦାସ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ପଞ୍ଚଷଷ୍ଟିତମୋଽଧ୍ୟାୟଃ ।

—⁂—

## ଷଟ୍‌ଷଷ୍ଟିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ହୋଇ କୃତକୃତ । ତୁମ୍ଭ ଗଳାରେ ସେ ଲମ୍ବିତ ॥ କାହାକୁ ବୈଜୟନ୍ତୀ କହି । ପୁଚ୍ଛଇ କୃଷ୍ଣମୁଖ ଚାହିଁ ॥ ସେ ମାଳା ଯେତେକ ଚରିତ । ତୁମ୍ଭ ଗଳାରେ ସେ ଲମ୍ବିତ ॥ ଶ୍ରୀ ଭଗବାନୁବାଚ—ଶୁଣ ଅର୍ଜୁନ ମନ ଦେଇ । ଗୋଲକପୁରେ ନିତ୍ୟରହି ॥ ବିରାଟ ନିଜସ୍ଥାନ ସେହି । ନିତ୍ୟେ ତହିଁରେ ବିଶ୍ରା-ମଇ ବିରାଟ ଶରୀର ବିସ୍ତାର । ଚଉଦ ମାଳା ତା ଗଳାର ॥ ଅମ୍ଭେ ତାଠାରୁ ଉତ୍ପନ୍ନ ଜାତ । ସେ ନାହିଁକାର ଅମୃତାତ ॥ ତହିଁ ଯେତେକ ସଖୀଛନ୍ତି । ବୈଜୟନ୍ତୀ ସେ ଅଟନ୍ତି ॥ ଜାତ ହେବା ବେଳେ

ସେହ୍ନ । ତାଙ୍କ ଗଳାରୁ ମାଳା ଦେଇ । ଶୂନ୍ୟରେ ବାନ୍ଧୁ ଦେ ଗଲାଲ୍ଲ ॥ ବ୍ରଅ ଶବ୍ଦରେ ସେ ମିଶିଲ୍ଲ । ବ୍ରଅ ନାମଟି ମାଳାହୋଇ ॥ ସେ ମାଳା ଜଗତେ ସଞ୍ଚରଇ । ଶୁଣି ଅର୍ଜ୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଷଟ୍‌ଷଷ୍ଟିତମୋଽଧ୍ୟାୟଃ ।



## ସପ୍ତଷଷ୍ଟିତମ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ପୁଣି ଅର୍ଜ୍ଜୁନ ବିନୟରେ । ପଚାରଇ କୃଷ୍ଣର ପୟରେ ॥ ଯେ ପୂର୍ବକାଳେ ଅବତାରେ । ଧଇଲେ ଶୂକର ରୂପରେ ॥ ପୃଥିବୀ ଦନ୍ତରେ ଧଇଲେ । କାହା ଉପରେ ଉଭା ହେଲେ । ଏ ବାକ୍ୟ କହ ଦାମୋଦର । ପୃଥିବୀ ତୋ ଦନ୍ତେ ସୁନ୍ଦର ॥ ଶ୍ରୀ ଭଗବାନୁବାଚ—ଶୁଣ ଅର୍ଜ୍ଜୁନ ମନ ଦେଇ । କହିବା ଭୂଗୋଳକୁ ଫେଇ ॥ ଯେ କାଳେ ଶୂକର ଶରୀର । ପୃଥିବୀ ଦନ୍ତେ ସେ ସୁନ୍ଦର ॥ ଶିଶିର ଦୁର୍ବା ଅଗ୍ରେ ଯେହ୍ନେ । ମୋହର ରୂପ ଅଟେ ତେହ୍ନେ ॥ ନୀଳବର୍ଣ୍ଣଟି ଅଟେ ଦେହେ । ମୋ ରୂପ ତେହ୍ନେ ଶୋଭାପାଏ ॥ ଶିଶିର ଟୋପାର ଆକାର । ବ୍ରହ୍ମାଣ୍ଡ ମୋ ଦନ୍ତ ଶିଖର ॥ ଅନନ୍ତ ଆସନ ଉପରେ । ଉଭା ମୁଁ ହୋଇଲି ନିଷ୍ଠରେ ॥ ସକଳ ମୋହର ସଂସାର । ଅନନ୍ତ ମୋର ଗର୍ଭଧର ॥ କହଇ ବଳରାମ ଦାସ ॥ ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ସପ୍ତଷଷ୍ଟିତମୋଽଧ୍ୟାୟଃ ।



## ଅଷ୍ଟଷଷ୍ଟିତମ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ମନେ ବିଚାରଇ । ଫଣୟ ଫେଡ଼ି ପଚାରଇ । ହେ ପ୍ରଭୁ ତୁମ୍ଭର ପୟର । ଲମ୍ବ ହୋଇଛୁ କେଉଁ ଠାର । ସେ କଥା କହିବା ବିସ୍ତାର । କୁକର୍ମମାନ ଦୂର କର । ଶ୍ରୀ ଭଗବାନୁବାଚ—ଜାଣିଲେ ପ୍ରଭୁ ଚକ୍ରଧର । କହିଲେ ଶ୍ରୀରଙ୍ଗ ଅଧର । ବୋଇଲେ ଶୁଣ କୁନ୍ତୀସୁତ । ଶୁଣିଲ ହୃଦୟ ବାରତ । ମନରେ ଭୟ ତୁ ନ କଲୁ । ଫଣୟ ଫେଡ଼ି ତୁ ପୁଛିଲୁ । ୬ । ବୋଇଲୁ ତୁମ୍ଭର ପୟର । ଲମ୍ବ ହୋଇଛୁ କେଉଁଠାର । ସେକଥା କହିବା ବିଚାର । କୁକର୍ମମାନ ଦୂରକର । ଯେ କାଳେ ବାମନ ମୂରତ । ନାଭିରୁ ପାଦ ଉତପତ । ସେ ପାଦ ଆକାଶକୁ ଗଲା । ବ୍ରହ୍ମା ଯେ ଗଙ୍ଗାକୁ ଢାଳିଲା । ସେ ଗଙ୍ଗା ନଖ କୋଣେ ରହି । ତେଣୁ ମୋ ପାଦ ଲମ୍ବ ହୋଇ ।୧୧। ଶୁପତ ବ୍ରହ୍ମା ଏ ବୋଲଇ ତିନି ଚରଣ ମୋର ହୋଇ । ସ୍ୱର୍ଗ ପାଦଟି ଏ ମୋହର । ମଅ ପଦଟି ଯେ ଭିତର । ଶୂନ୍ୟରୁ ବିନ୍ଦୁ ଯେ ଖସିଲା । ସେହିଟି ଲମ୍ବ ପାଦ ହେଲା । ୧୪ । କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ୨୫ । ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରିଅର୍ଜ୍ଜୁନ ସମ୍ବାଦେ ନାମ ଅଷ୍ଟଷଷ୍ଟିତମୋଽଧ୍ୟାୟଃ ।

---

## ଊନସପ୍ତତିତମ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବୋଲଇ ଗୋସାଇଁ । କଥାଏ ପଚାରିବି ମୁହିଁ । ୧ । ପୁଣ୍ୟ କରିବ ପୁଣ୍ୟ କାଳେ । ନିଷେଧ ନ କରିବ ଡ଼ାଳେ । ପୁଣ୍ୟକାଳଟି କେଉଁଟଇ । ନିଷେଧ କେଉଁକେ ନ ରଇ । ଏ ଜ୍ଞାନ କହ ଦଇତାରି । ଶୁଣିଲେ ଯିବି ମୁଁ ନିସ୍ତରି ।

ଶ୍ରୀ ଭଗବାନୁବାଚ—ଅର୍ଜୁନ ବଚନେ ମାଧବ । କହିଲେ ଭୂଗୋଳ ପ୍ରସ୍ତାବ । ୫ । ସ୍ତ୍ରିଗଣଙ୍କ ରଜୋବତୀ କାଳେ । ପୁଣ୍ୟ କରିବ ସେହି ବେଳେ ॥ ଅନ୍ୟ ଦିବସେ ନ ଛୁଇଁବ । ବ୍ରହ୍ମବଧ ଦୋଷ ଲଭିବ ॥ ସେ ପୁଣ୍ୟକାଳେ ପୁଣ୍ୟ କଲେ । ତହୁଁ ପୁରୁଷ ହୁଏ ଭଲେ ।୮। ଅନ୍ୟ ଦିବସେ ବ୍ୟର୍ଥ ଯାଇ । ତେଣୁ ଯେ ପାତକ ହୁଅଇ ॥ କହଇ ବଳରାମ ଦାସ ॥ ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ୧୦ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଊନସପ୍ତତିତମୋଽଧ୍ୟାୟଃ ।

— ❊ —

## ସପ୍ତତିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଶୁଣି ଅର୍ଜୁନ ପଚାରଇ । କହ ହେ ବ୍ରହ୍ମାଣ୍ଡ ଗୋସାଇଁ । ୧ । ଶଶାଙ୍କ ମୁଣ୍ଡେ ଶୃଙ୍ଗଜାତ । ବନ୍ଧ୍ୟା ଯେ ପ୍ରସବିଲା ସୁତ । ଏ ଅର୍ଥ କହ ମୋତେ ଫେଡ଼ି । ନମସ୍ତେ କମଳାର ସାଇଁ ॥ ବନ୍ଧ୍ୟାଟି କେହୁ ବୋଲାଇଲା । ସୁତ କେମନ୍ତେ ପ୍ରସବିଲା ॥ ଶ୍ରୀ ଭଗବାନୁବାଚ—ଶଶାଙ୍କ ବୋଲି ଯାହା କହି । ଜ୍ୟୋତି ରୂପଟି ସେ ବୋଲାଇ ॥ ବିକୁଣ୍ଠ ପରେ ଜ୍ୟୋତି ଥାଇ । ଶଶାଙ୍କ ଶୃଙ୍ଗ ସେ ବୋଲାଇ । ୬ । ଚକ୍ଷୁ ଉପରେ ବିଜେ କରି । ସେହିଟି ବନ୍ଧ୍ୟାରୂପ ଧରି ॥ ଜନ୍ମ ମରଣ ତାର ନାହିଁ । ସ୍ତ୍ରିଗ୍ଧ ପୁରୁଷ ସେ ନୁହଇଁ ॥ ପରମ ପୁର ବୋଲି ଜାଣ । ବ୍ରହ୍ମାଣ୍ଡ କରଇ ଭିଆଣ ॥ କେବଳ ଥାଇ ଜନ୍ମ ନାହିଁ । ଏଣୁଟି ବନ୍ଧ୍ୟା ବୋଲି କହି ॥ କହଇ ବଳରାମ ଦାସ । ସୁଜନେ ନ ଘେନିବ ଦୋଷ ।୧୧।

ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ସପ୍ତତିତମୋଽଧ୍ୟାୟ ।

—❊—

# ଏକସପ୍ତତିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ବିନୟ ବଚନେ । କହଇ କୃଷ୍ଣ ସନ୍ନିଧାନେ । ୧ । କଥାଏ ପଚ୍ଛୁଇବି ତହିଁ । ଫେଡ଼ିବ ସଂଶୟ ଗୋସାଇଁ । ୨ । କର୍ମ ସରିଲେ ଫଳ କ୍ଷୟେ । କିବଧ କ୍ଳେଶ ମାନ ରହେ ॥ ଏ ଅର୍ଥ କହ ଭଗବାନ । ନମଇଁ ତୁମ୍ଭର ଚରଣ । ୪ । ଶ୍ରୀ ଭଗବାନୁବାଚ—ଅର୍ଜୁନ ବାକ୍ୟେ ଦାମୋଦର । କହନ୍ତି ଭୂଗୋଳ ବିସ୍ତାର ॥ ଶୁଣ ଅର୍ଜୁନ ମନ ଦେଇ । ବ୍ରହ୍ମାଣ୍ଡ-ଭୂଗୋଳ କହଇ ॥ ଜୀବକୁ କର୍ମବୋଲି କହି । ତାହା ସରିଲେ ଫଳ ନାହିଁ ॥ ଜୀବ ପରମ ଫଳ ହୋଇ । କର୍ମ ସରିଲେ ନାଶ ଯାଇ ॥ କ୍ଳେଶ ବୋଲନ୍ତେ ଦେହ କହି । ଏ ଦେହ ମାଟିରେ ମିଶଇ ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ-ଭୂଗୋଳ ପ୍ରକାଶ । ୧୦ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଏକସପ୍ତତିତମୋଽଧ୍ୟାୟଃ ।

---

# ଦ୍ୱିସପ୍ତତିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ବିନୟ ଭାବରେ । ପଡ଼ଇ କୃଷ୍ଣର ପୟରେ ॥ କଥାଏ ପଚ୍ଛୁଇବି ମୁହିଁ । ଫେଡ଼ିବ ସଂଶୟ ଗୋସାଇଁ ॥ ଏକଇ ବୃକ୍ଷେ ହଂସ ଦୁଇ । ବସନ୍ତି ପ୍ରିୟଭାବ ବହି । ୩ । ବୃକ୍ଷର ଫଳ ଯେ ଭୁଞ୍ଜିଲା । କେମନ୍ତେ ଜଳରେ ପଡ଼ିଲା ॥ ଏ କଥା କହ ଦଇତାରି । ନମସ୍ତେ ମୁକୁନ୍ଦ ମୁରାରି ॥ ଶ୍ରୀ ଭଗବାନୁବାଚ—ଭୃତ୍ୟ ବଚନେ ଚକ୍ରଧର । କହନ୍ତି ଭୂଗୋଳ ବିଚାର ॥ ଦେହକୁ ବୃକ୍ଷ ବୋଲି ଜାଣ । ଜୀବ ପରମ ଦୁଇ ପୁଣ ॥ ଏ ବୃକ୍ଷେ ବେନି ପକ୍ଷି ଥାନ୍ତି । ଏକ ଅନ୍ୟେକ ନ ଦେଖନ୍ତି ॥ ପାପ ଫଳଟି ଯେ

ଅଟଇ । ଜୀବ ତା ଅବଶ୍ୟ ଭୁଞ୍ଜଇ ॥ ପରମ ଥାଇ ସାକ୍ଷୀ ରୂପେ । ଉଦାସୀ ମତେ ସବେ ଦେଖେ ॥ ଜୀବଟି ପାପଫଳ ପାଇ ମାୟା-କାଳରେ ସେ ପଡ଼ଇ ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ୧୧ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଦ୍ୱିସପ୍ତତିତମୋଽଧ୍ୟାୟଃ ।

---

## ତ୍ରିସପ୍ତତିତମୋଽଧ୍ୟାୟ

ଅର୍ଜ୍ଜୁନ ଉବାଚ—ବୋଲେ ଅର୍ଜ୍ଜୁନ ଶୁଣ ହରି । କହିବା ଭୂଗୋଳ ବିସ୍ତାରି ॥ ଯଦୁ ରାଜନ ଅବଧୂତ । ଏ ବେନି ଜନଙ୍କ ଚରିତ ॥ ଯଦୁ ରାଜନ କେଉଁ ପୁଣ । ଅବଧୂତଟି କେ ପ୍ରମାଣ ॥ ଏ ଜ୍ଞାନ କହ ନାରାୟଣ । ନମସ୍ତେ କମଳ ଲୋଚନ ॥ ଶ୍ରୀ ଭଗବାନୁବାଚ ଶୁଣ ଭକତ ସାମରଥୀ । କହିବା ତୋତେ ତତ୍ତ୍ୱ କଥା ॥ ଯଦୁରାଜନ ଜୀବ ହୋଇ । ପରମ ଅବଧୂତ କହି ॥ ମୀନଟି ଜୀବ ବୋଲି ଜାଣ । ଚୈତନ୍ୟ ପରମ କାରଣ ॥ ଚୈତନ୍ୟ ମନକୁ ଯେ କହି । ଶୁଣ ହେ ଯୁଧିଷ୍ଠିର ଭାଇ ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ତ୍ରିସପ୍ତତି-ମୋଽଧ୍ୟାୟଃ ।

---

## ଚତୁଃସପ୍ତତିତମୋଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବୋଲେ ଭଗବାନ । ମୁଁ ତୁମ୍ଭ ଚରଣେ ଶରଣ ॥ ଯାବତ ଚନ୍ଦ୍ର ସୂର୍ଯ୍ୟ ଦଶେ । ତାବତ ଏ ବ୍ରହ୍ମ

ପ୍ରକାଶେ ॥ ଏ ଅର୍ଥ କହ ଭଗବାନ । ତୋ ପାଦ ଜଗତ କାରଣ
ଶ୍ରୀ ଭଗବାନୁବାଚ–କହନ୍ତି କମଳାର ବର । ଶୁଣ ହେ ଭକତ ମୋହର ॥ ରଜଟି ଚନ୍ଦ୍ର ବୋଲି କହୁ । ସୂର୍ଯ୍ୟ ରୂପଟି ବନ୍ଦ ହୋଇ ॥ ରଜରେ ବୀଜ ଯୁକ୍ତ ହେଲା । ଏଣୁ ସେ ବୃକ୍ଷ ପ୍ରକାଶିଲା କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଚତୁଃସପ୍ତତିତମୋଽଧ୍ୟାୟଃ ।

— ✿ —

## ପଞ୍ଚସପ୍ତତିତମ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ପୁଣି ପଚ୍ଛରଇ ଅର୍ଜ୍ଜୁନ । ହେ ନାଥ ଅଘେ ଭଞ୍ଜନ ॥ ସେ ଦେଶେ କୃଷ୍ଣ ମୃଗ ସାର ନ ଦେଖି ବିଷ୍ଣୁ ଭକ୍ତ ନର ॥ ସେ ଦେଶ ପତିତ ହୋଇଲା । ଫଣସ୍ଥ ଫେଡ଼ ନନ୍ଦ ବଳା ॥ ପତିତ ଦେଶ କେ ବୋଲଇ । କୃଷ୍ଣ-ମୃଗଟି କେ ଅଟଇ ॥ ଅର୍ଜ୍ଜୁନ କହ ଫେଡ଼ିକରି । ଶୁଣି ମୁଁ ଜ୍ଞାନେ ଯିବି ତରି ॥ ଶ୍ରୀ ଭଗବାନୁବାଚ—ବୋଲନ୍ତି ଜଗତ ଜୀବନ । ଶୁଣ ଭକତ ଦେଇ ମନ ॥ ଦେଶ ଯେ ମାତା ପଦ୍ମ କହୁ । କୃଷ୍ଣ ପକ୍ଷଟି ସେ ବୋଲଇ ॥ ତହିଁର ସଙ୍ଗ ଯେ କରଇ । ତାହାକୁ ପତିତଟି କହି ॥ ଯହୁଁ ପଦ୍ମରେ ବୁହାଇଲା । ସେ ଦେଶ ପତିତ ହୋଇଲା । ସେ ଦିନ ପଦ୍ମଫୁଟି ଥାଇ । ଶୁକ୍ଳପକ୍ଷଟି ସେ ବୋଲଇ ॥ ସେ ଦିନ ରତି ଯେବେ କରି । ସେ ଦେଶେ ସୁକର୍ମ ଆଚରି ॥ କହଇ ବଳରାମ ଦାସ । ବ୍ରହ୍ମାଣ୍ଡ-ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ପଞ୍ଚସପ୍ତତିତମୋଽଧ୍ୟାୟଃ ।

—✿—

## ଷଡ଼ସପ୍ତତିତମୋ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବୋଲଇ ଗୋସାଇଁ । କଥାଏ ମନେ ପଡ଼ିଲଇଁ ॥ ଗ୍ରହଣେ ରବି ଚନ୍ଦ୍ର ଯେବେ । ସର୍ବେ ପର୍ବାଣ ହୋନ୍ତି ତେବେ ॥ ଏ ଅର୍ଥ କହ ଭଗବାନ । ନମଇଁ ତୁମ୍ଭର ଚରଣ ॥ ଶ୍ରୀ ଭଗବାନୁବାଚ—କହନ୍ତି ପ୍ରଭୁ ଭାବଗ୍ରାହୀ । ମାତାର ପଦ୍ମ ଫୁଟିଥାଇ ॥ ଗ୍ରହଣ କାଳ ଯେ ଅଟଇ । ଶୁଣ ଅର୍ଜ୍ଜୁନ ମନ ଦେଇ ॥ ଚନ୍ଦ୍ର ଯେ ମାତା ରଜ ହେଲା । ବୀଜ ଅଟଇ ସୂର୍ଯ୍ୟ କଲା ॥ ରଜ ବୀଜର ଯୁକ୍ତି ହେଲା । ସର୍ବ ପର୍ବାଣ ତେଣୁ କଲା ॥ ଭଣଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଷଡ଼ସପ୍ତତିତମୋଽଧ୍ୟାୟଃ ।

—*—

## ସପ୍ତସପ୍ତତିତମ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ବୋଲଇ ଗୋସାଇଁ । କଥାଏ ପଚ୍ଚାରିବି ମୁହିଁ ॥ ବାମ ପାର୍ଶ୍ୱେ ଗୁରୁ ଥାଇ । ଦକ୍ଷିଣେ ଅଗ୍ରୁର୍ଯ୍ୟ ବସଇ ॥ ଏ ବେନି କରି ନମସ୍କାର । ଗଙ୍ଗା ଯମୁନା ଗଣେଶ୍ୱର ॥ ଗଙ୍ଗା ଯମୁନା କେ ବୋଲାଇ । ଗଣେଶ୍ୱରଟି କେ ହୁଅଇ ॥ କେମନ୍ତେ କରି ନମସ୍କାର । କହ ହେ କମଳାର ବର ॥ ଗୁରୁ ଯେ କେ ପୁଣ ଅଟନ୍ତି । ଅଗ୍ରୁର୍ଯ୍ୟ କେ ଅବା ହୁଅନ୍ତି ॥ ନିଶ୍ଚୟ କରି କହ ଫେଡ଼ି । ନମସ୍ତେ ମୁକୁନ୍ଦ ମୁରାରି ॥ ଶ୍ରୀ ଭଗବାନୁବାଚ—ଶୁଣ ଅର୍ଜ୍ଜୁନ ଦେଇ ଚିତ୍ତ । ତୋତେ କହିବା ଜ୍ଞାନ ତତ୍ତ୍ୱ ॥ ବାମ ନାସିକା ଗୁରୁ କହି । ଯମୁନା ଧାର ସେ ବୋଲାଇ ॥ ଦକ୍ଷିଣ ନାସାଟି ଅଗ୍ରୁର୍ଯ୍ୟ । ଗଙ୍ଗାଧାରଟି ସେହୁ ହେଜ ॥ ଏବେଣି

ମଧ୍ୟେ ଶିରଶେଶ୍ୱର । ଏମନ୍ତେ ହେଲା ତନ୍ମଧାର । ଏ ତନ ପବନଙ୍କୁ ଧର । ଶୂନ୍ୟ ଗୁମ୍ଫାରେ ନେଇ ଭର । ଯେଣୁ ଉଲଟ ବ୍ରହ୍ମାଇଲ । ଏଣୁଟି ନମସ୍କାର କଲ । ସୋମ ମଙ୍ଗଳ ଶଙ୍ଖ କହ । ପବନଦୁର୍ବା କୁର ହୋଇ ॥ କହଇ ବଳରାମ ଦାସ । ସେ ଦୁର୍ବାଙ୍କୁରେ ମୋର ଅଣ । ୧୫ । ଇତ ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରଅର୍ଜୁନ ସମ୍ବାଦେ ନାମ ସପ୍ତତତମୋଽଧ୍ୟାୟଃ ।

---

## ଅଷ୍ଟସପ୍ତତତମ ଅଧ୍ୟାୟ

ଅର୍ଜୁନ ଉବାଚ—ପୁଣି ଅର୍ଜୁନ ପଚାରଇ । କହ ହେ ବ୍ରହ୍ମାଣ୍ଡ ଗୋସାଇଁ । ୧ । ଅତ୍ମାକୁ ଅତ୍ମା ଯେବେ ସ୍ମରେ । ପରମାନନ୍ଦେ ସେ ବହରେ ॥ ଏ ଜ୍ଞାନ କହ ମୋତେ ଫେର । ନମସ୍ତେ ପ୍ରଭୁ ଭାବଗ୍ରାହ୍ୟ ॥ ଶ୍ରୀଭଗବାନୁବାଚ—ଶୁଣ ଅର୍ଜୁନ ବୀରମଣି । ତୋତେ କହିବା ଜ୍ଞାନ ବାଣୀ । ଅତ୍ମା ଯେ ମାତା ରଜ କହ । ଅରେକ ଅତ୍ମା ବୀଜ ହୋଇ । ରଜରେ ବୀଜ ଯୁକ୍ତ ହେଲା । ଅତ୍ମାକୁ ଅତ୍ମା ଯେ ହୁଇଲା । ରଜ ବୀଜଙ୍କ ମଧ୍ୟେ ଯାଇ । ପରମଅତ୍ମା ବହଇ । କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ଇତ ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହର ଅର୍ଜୁନ ସମ୍ବାଦେ ନାମ ଅଷ୍ଟସପ୍ତତତମୋଽଧ୍ୟାୟଃ ।

—※—

## ଊନଶୀତତମୋଽଧ୍ୟାୟ

ଅର୍ଜୁନ ଉବାଚ—ପୁଣି ଅର୍ଜୁନ ପଚାରଇ । ଶୁଣ ହେ କମଳାର ସାଇଁ । ଗୋବିନ୍ଦ ଗୋବିନ୍ଦ ଗୋବିନ୍ଦ । ପଦୁ ଗନ୍ଧକୁ ମକରନ୍ଦ । ସେ ମକରନ୍ଦ ପାନ କର । ଭବୁ ଭକତେ ଗଲେ ତର ।୩। ଗୋବିନ୍ଦ ଧାର କେ ହୋଇଲେ । ପାଦରୁ କେମନ୍ତେ

ଗଲାଲ । ତାହା ଭକତେ ପାନକର । କେମନ୍ତେ ଗଲେ ଉବୁ ଉର । ଏ ଜ୍ଞାନ ଫେଡ଼ି କହ ହର । ଶୁଣିଲେ ଯିବ ମୁଁ ନିସ୍ତର ॥ ଶ୍ରୀ ଭଗବାନୁବାଚ—ଶୁଣ ଅର୍ଜ୍ଜୁନ ବୀରବର । କହିବା ବ୍ରହ୍ମାଣ୍ଡ ଭୂଗୋଳ ।୭। ଗୋବିନ୍ଦ ପାଦୁ ଯେ ବହିଲା । ପଦ୍ମରେ ଯାଇ ବିଶ୍ରାମିଲା ।୮। ତହିଁରେ ପ୍ରତ୍ୟକ୍ଷେ ସଞ୍ଚରଇ । ଗିରଶିଖର ପରେ ଥାଇ । ଯେ ବାଟେ ବିନ୍ଦୁ ଯେ ପଡ଼ଇ । ଏ ଜୀବ ଧ୍ୟାନ କରୁଥାଇ ।୧୦। ଅଲେଖ ଜ୍ୟୋତି ବ୍ରହ୍ମପଦ । ତହିଁରୁ ଗଲେ ମକରନ୍ଦ ।୧୧। ପଦ୍ମରେ ଥାଇ ପାନ କଲା । ଉର୍ଦ୍ଧରୁ ଉଦ୍ଧାର ହୋଇଲା । ୧୨ । ଶୁଣି ଅର୍ଜ୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ । ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହର-ଅର୍ଜ୍ଜୁନ ସମ୍ବାଦେ ନାମ ଊନଶୀତିତମୋଽଧ୍ୟାୟଃ ।

---

## ଅଶୀତିତମ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ ପଡ଼ଇ ପଯୃରେ । ପଚାରେ ଆକୁଳ ଭାବରେ ।୧। ଗୋବିନ୍ଦ କମଳ ଲୋଚନ । ଏ ଅର୍ଥ କହ ଭଗବାନ ॥ କମଳ ଲୋଚନ ତୁମ୍ଭର । କେମନ୍ତେ ହୋଇଲି ଚକ୍ରଧର । ୩ । ଏ ଜ୍ଞାନ ଫେଡ଼ି ମୋତେ କହ । ମନରୁ ଫିଟାଅ ସନ୍ଦେହ । ୦ । ଶ୍ରୀ ଭଗବାନୁବାଚ – କହନ୍ତି କମଳ ଲୋଚନ ଏହା ତୁ ଗଣ୍ଠି କର ଘେନ ॥ ପଦ୍ମ କମଳ ଫୁଟିଥିଲା । ତହିଁରେ ବିନ୍ଦୁ ଯେ ପଡ଼ିଲା ॥ ରଜୋ ବୀଜଙ୍କ ମଧ୍ୟେ ମୁହିଁ । ଜ୍ୟୋତି ରୂପରେ ପ୍ରକାଶଇ ॥ କମଳଲୋଚନ ମୋ ନାମ । ତେଣୁ ହୋଇଛି ହେ ଅର୍ଜ୍ଜୁନ । ଶୁଣି ଅର୍ଜ୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ । ୯ । ଇତିଶ୍ରୀବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହର ଅର୍ଜ୍ଜୁନ ସମ୍ବାଦେ ନାମ ଅଶୀତିତମୋଽଧ୍ୟାୟଃ ।

—୦—

## ଏକାଶୀତିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ମନେ ହେତୁ କର । ପଚ୍ଛୁରେ କୃଷ୍ଣ ପାଦଧର । ୧ । ଅଶ୍ୱତ୍ଥ ତରୁମୂଳେ ବସି । ନିଜ ମହିମା ପରକାଶି । ଏକଥା ଫଣୟ ମୋହର । ପଚ୍ଛୁ ଅଛୁ ଚକ୍ରଧର ॥ ଶ୍ରୀ ଭଗବାନୁବାଚ—ଏ ଜ୍ଞାନ ନ କହିବୁ କାହିଁ । ମୋହର ପାଦ ଥାଅ ତୁହି ॥ ଅଶ୍ୱତ୍ଥ ବୃକ୍ଷ ଦେହ ଜାଣ । ତାହାକାରେ ମୋ ନିଜ ସ୍ଥାନ । ଦେହରେ ଅଶ୍ୱତ୍ଥ ନ ଥିଲେ । ଜୀବ ପରମ ଲୀନ ହେଲେ ॥ ଜୀବେ ପରମ ବ୍ରହ୍ମେ ଲୀନ । ସେହି ବ୍ରହ୍ମଟି ଜ୍ୟୋତି ଜାଣ । ନିଜରୂପଟି ଅଟେ ସେହି । ବୃକ୍ଷ ମୂଳରେ ପ୍ରକାଶଇ ॥ ତକ୍ଷଣେ ଶୂନ୍ୟେ ଚଳିଯାନ୍ତି । ମହାଶୂନ୍ୟରେ ସେ ରହନ୍ତି । ୯ । କହଇ ବଳରାମ ଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ । ୧୦ । ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଏକାଶୀତିତମୋଽଧ୍ୟାୟଃ ।

— ❊ —

## ଦ୍ୱାଶୀତିତମ ଅଧ୍ୟାୟ

ଅର୍ଜୁନ ଉବାଚ—ବୋଲେ ଅର୍ଜୁନ ଶୁଣ ହରି । କଥାଏ ଅଛଇ ମୋହର ॥ ପଦ୍ମନ ଛେଦ ଚକ୍ର ଗଲା । ତୁମ୍ଭର ହସ୍ତକୁ ନଇଲା ॥ ପଦ୍ମନ କେ ଅବା ଅଟନ୍ତି । କେମନ୍ତେ ଚକ୍ରରେ ନାଶନ୍ତି ॥ ଏ ଅର୍ଥ କହ ଆଦିମୂଳ । ଶରଣ ତୋ ପାଦ କମଳ ॥ ଶ୍ରୀ ଭଗବାନୁବାଚ—କହନ୍ତି ପ୍ରଭୁ ବ୍ରହ୍ମଋଷି । ରଙ୍ଗ ଅଧରେ ମନ୍ଦ ହସି ॥ ବଚନକୁ ବନ ବୋଲି କହି । ଅଲେଖ ବ୍ରହ୍ମ ଚକ୍ର ରହି ॥ ·ଳୟକାଳ ଟହିଁ ହେଲା । ଶରୀର କାଳ ଆକର୍ଷିଲା । ୭ । ପାଦରୁ ·ବଳକୁ ଯାଏ । ଜଳ ଘୋଟଇ ଅପ୍ରମୟେ ॥ ତା ଦେଖି ପ୍ରଭୁ ·ବାନ । ବେଗେ ପେଷିଲେ ସୁଦର୍ଶନ । ୯ । ଶୂନ୍ୟ ଶବଦ

ସୁଦର୍ଶନ । ବସ୍ତୁରେ ଛାଡ଼ଇ ବହନ । ୧୦ । ଜ୍ୟୋତି ରୂପରେ ଛାଡ଼ିଗଲ । କୃଷ୍ଣର ହସ୍ତକୁ ନଇଲ ॥ ଅତି ଗୁପତ ଜ୍ଞାନ ଏହି । ତୋତେ କହିଲି ବୀର ଫେଇ । ୧୨ । ଶୁଣି ଅର୍ଜୁନ ହେଲେ ତୋଷ । ଭଣିଲେ ବଳରାମ ଦାସ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଦ୍ୱାଶୀତିତମୋଽଧ୍ୟାୟଃ ।

## ତ୍ର୍ୟାଶୀତିତମ ଅଧ୍ୟାୟ

ଅର୍ଜୁନ ଉବାଚ — ଅର୍ଜୁନ ବୋଲେ ପ୍ରାଣନାଥ । ମନରେ ପଡ଼ିଲା ଯଥାର୍ଥ ।୧। ମୋର ନିବାସ ମାନ ଥିବ । ଜଳେ ଦ୍ୱାରକା ନାଶ ଯିବ ।୨। ଦ୍ୱାରକା ଜଳେ ବୁଡ଼ିଗଲେ । ତୋର ନିବାସ ନ ବୁଡ଼ିଲା ॥ ଏକଥା କହ ଭବଗ୍ରାହୀ । ମୁଁ ତୁମ୍ଭ ସେବକ ଅଟଇ ॥ ଶ୍ରୀଭଗବାନୁବାଚ—କହନ୍ତି ଦେବକୀ ନନ୍ଦନ । ଶୁଣ ହେ ପାଣ୍ଡବ ଅର୍ଜୁନ ।୫। ତାଳକାଦ୍ୱର ଯେ ଅଟଇ । ଦ୍ୱାରକା ପୁର ତାକୁ କହି ॥ ଶଙ୍ଖରେ ଅଛି ଥାଅ ସ୍ତ୍ରୀଷି । ସେଠାରେ ନ ପାରଇ ପଶି ॥ ତହିଁରେ ବ୍ରହ୍ମାଣ୍ଡ ଯୋଆଇଁ । ବହ୍ନିକେ ଜ୍ୟୋତିରୂପ ହୋଇ ॥ ବ୍ରହ୍ମ ପ୍ରଳୟ ହୋଇ-ଯାଇ ॥ ସମସ୍ତେ ଲୀନ ସେହିଠାଇଁ ॥ କହଇ ବଳରାମଦାସ । ବ୍ରହ୍ମାଣ୍ଡ ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନେ ହରି-ଅର୍ଜୁନ ସମ୍ବାଦେ ନାମ ତ୍ର୍ୟାଶୀତିତମୋଽଧ୍ୟାୟଃ ।

## ଚତୁରଶୀତିତମ ଅଧ୍ୟାୟ

ଅର୍ଜୁନ ଉବାଚ—ଅର୍ଜୁନ ବୋଲେ ଭଗବାନ । ତୁମ୍ଭେ ଯେ ଜଗତ ରକ୍ଷଣ ॥ କୃଷ୍ଣ ବିଧବା ଯେତେ ନାରୀ । ମିଳିଲେ ଅଭ-କ୍ଷେକ କରି ॥ କୃଷ୍ଣ ଯେ ନିଜପୁର ଗଲେ । କନ୍ୟାଏ ବିଧବା ହୋଇଲେ ॥ ବିଧବା ହେଲେ କୃଷ୍ଣନାରୀ । କେମନ୍ତେ ଅଭିଷେକ କରି ॥ ଏ କଥା ଫେଡ଼ି କହ ମୋତେ । ନମଇଁ ତୋର ପାଦ ... । ଶ୍ରୀ ଭଗବାନୁବାଚ—ଅର୍ଜୁନ ବାକ୍ୟେ ଭଗବାନ

କହନ୍ତି ଭୂଗୋଳ ବିଧାନ । ଦେହରୁ ଜୀବ ଛାଡ଼ିଗଲେ । କନ୍ୟାଏ ତହିଁ ଲୀନ ହେଲେ ॥ କନ୍ୟାଙ୍କ ଅଭିଷେକ ଏହୁ । ମିଳିଲେ ଜ୍ୟୋତିବ୍ରହ୍ମେ ଯାଇଁ ॥ କହଇ ବଳରାମଦାସ । ବ୍ରହ୍ମାଣ୍ଡ-ଭୂଗୋଳ ପ୍ରକାଶ ॥ ଇତି ଶ୍ରୀ ବ୍ରହ୍ମାଣ୍ଡ-ଭୂଗୋଳ ବର୍ଣ୍ଣନେ ହର ଅର୍ଜୁନ ସମ୍ବାଦେ ନାମ ଚତୁରଶୀତିତମୋଽଧ୍ୟାୟଃ ।




ାକର—ଶ୍ରୀ ଦାଶରଥି ଦାସ, ଦାଶରଥି ପ୍ରେସ, କଟକ-୧୯୫୨